ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ନଭେମ୍ବର ୨୦୧୫ ସଂସ୍କରଣ

ଏଡ୍‌ସ ବାବା

ବୁଢ଼ୀ ମାଉସୀ

ହିଂସ୍ରୁକ ମଣିଷ

ଭିନ୍ନ ଏକ ପ୍ରେମିକା

ଗୋପନରେ ଟିଠିଟିଏ

ପାଠୁଆ ବାଡ୍ୟା

ଶ୍ୱାନ ଚେତନା

ଗପ ହେଲେ ବି ସତ

କାର୍ତ୍ତିକ ସ୍ନାନର ମାହାତ୍ମ୍ୟ

ଫୋବିୟା ଓ ଆମେ

ମନରେ ଅଛି କଅଣ?

ଦଶମ ବର୍ଷ, ଏକାଦଶ ସଂଖ୍ୟା
ନଭେମ୍ବର, ୨୦୧୫



# ଆହ୍ୱାନ

ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା

ପ୍ରତିଷ୍ଠାତା - ସମ୍ପାଦକ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡ଼ି,ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ବୀମା ନଗର, ଦ୍ୱିତୀୟ ଗଳି, ବ୍ରହ୍ମପୁର, ୭୬୦୦୦୧, ଓଡ଼ିଶା

ଫୋନ୍ : ୯୦୪୦୯୮୫୪୭୩ ଇ-ମେଲ୍ : aahwaan@gmail.com





'ଆହ୍ୱାନ'ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖାଗୁଡ଼ିକୁ ହିଁ କପିରାଇଟର ବ୍ୟବସ୍ଥାରେ ଚୟନ କରାଯାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ, ଯେତେବେଳଯାଏଁ କୌଣସି ସୂଚନା କିମ୍ବା ନିର୍ଦ୍ଦେଶ ଦିଆଯାଇନାହିଁ । ଲେଖାରେ ଦିଆଯାଇଥିବା ବିଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତ ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ସମ୍ପାଦକ ସବୁ ଲେଖାକୁ ଭଲଭାବରେ ପଢ଼ିବା ଏବଂ ବୁଝିବା ପରେ ହିଁ ପ୍ରକାଶିତ କରିଥାନ୍ତି । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣ ମାଧ୍ୟମ / ସମ୍ବାଦପତ୍ର  ଇତ୍ୟାଦି)ରେ ପ୍ରକାଶିତ କରିବା ଏକ ଅପରାଧ । ଦୟାକରି ଏହି ବିଷୟ ପ୍ରତି ବିଶେଷ ଧ୍ୟାନ ଦେବେ  । ଲେଖକମାନେ ଚାହିଁଲେ ନିଜ ଲେଖାର ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କ ପ୍ରତିଛବି ଗଣମାଧ୍ୟମରେ / ଇଣ୍ଟରନେଟରେ ଦେଇ ପାରିବେ  ।

# ସମ୍ପାଦକୀୟ



ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ




ସ୍କୁଲରୁ ଫେରଥିବା ସାନ ଝିଅ ପ୍ରଶ୍ନକଲା, 'ବାପା ଖ୍ରୀଷ୍ଟିୟାନ୍ ମାନେ କାହିଁକ ଦୀପାବଳୀ ପାଳନ କରନ୍ତ ନାହିଁ ?' ତା ମୁହଁକୁ ଚାହିଁ ପୁଣି ଏକ ପ୍ରଶ୍ନ ପଚାରବାକୁ ଚାହୁଁଥିଲ, ଯେ ଏଇ ସବୁ ଧାରଣା ତୋ ମନରେ କାହିଁକ ଆସିଲା ? କଏ ତୋତେ ଏବେଠୁ ଏହ ହନ୍ଦୁ ଖ୍ରୀଷ୍ଟିୟାନ୍ ବଭେଦ ଶିଖାଇଲାଣି । କନ୍ତୁ ପ୍ରଶ୍ନ ପଚାରବା ଅପେକ୍ଷା ତା ମନରେ ଉଠିଥିବା ପ୍ରଶ୍ନକୁ ଉତ୍ତର ଦେଇଦେବା ଉଚତ ହେବ ମନେ କର କହଲ, 'କଏ କହଲା ? ଖ୍ରୀଷ୍ଟିୟାନ୍ ମାନେ ମଧ ଦପାବଳୀ ପାଳନ କରନ୍ତ ତ । ତୁ ଦେଖିନୁ କ ଲକୁନ୍ ଭଇ ଆଉ ରମି ଦଦ ଆସି ତୋ ସହତ ବାଣ ଫୁଟାନ୍ତ ନା ନାହିଁ ? ସେମାନେ ଦପାବଳୀ ସନ୍ଧ୍ୟାରେ ଆମ ଘରକୁ ଆସନ୍ତ ଆଉ ତୋ ସହ ସେମାନେ ମଧ ଦୀପ ଜଳାନ୍ତ ଆଉ ବାଣ୍ଡ ଫୁଟାନ୍ତ । ସେ ହସିଦେଇ କହଲା, 'ହଁ ତ । ମୁଁ ଭୁଲ ଯାଇଥିଲ ବାପା । ଛେ... ସେ ଲପିକୁ କଛ ଜଣାନାହିଁ ।' ଏବେ ପ୍ରଶ୍ନ କରବା ସମୟ ଆସିଥିଲା । ତା ମୁହଁରେ ଶାନ୍ତ ଦେଖି କହଲ, ତୋତେ କଏ ଏ ସବୁ ପ୍ରଶ୍ନ ପଚାରୁଛ ? ସେ ହସିଦେଇ କହଲା, ବାପା ଆମ କ୍ଲାସରେ ଲପି ବୋଲ ଝିଅଟେ ଅଛ, ସେ କହଲା ଯେ ଦପାବଳୀରେ କେବଳ ହନ୍ଦୁମାନେ ହିଁ ପାଳନ କରନ୍ତ । ଅନ୍ୟମାନେ କରନ୍ତ ନାହିଁ । ସେ ଖ୍ରୀଷ୍ଟିୟାନ୍ ତ ! ସେଇଥିପାଇଁ ସେମିତ



କହିଥିବ । ମୁ କହିଲି ଠିକ୍ ଅଛି, ତୁ ଗୋଟେ କାମ କରେ, ତାକୁ ଫୋନ କରି ଆମ ଘରକୁ ନିମନ୍ତ୍ରଣ ଦେ, ଆସିଲେ ମିଶିକି ବାଣ ଫୁଟେଇବି । ତାକୁ ବୋଧହୁଏ ବାଣ ଫୁଟାଇବାକୁ ମନ ହେଉଥିବ । କଥା ସେତିକିରେ ରହିଗଲା ।

କିନ୍ତୁ ସ୍ୱତଃ ମନକୁ ପ୍ରଶ୍ନ ଆସିଥିଲା, ଏତେ କୋମଳମତି ଶିଶୁମାନଙ୍କ ମନରେ ଧର୍ମକୁ ନେଇ ବିଭେଦ ସୃଷ୍ଟି କରିଲା କିଏ? ଏମିତି ସବୁ ଧାରଣା ସେମାନଙ୍କୁ କାହିଁକି ଶିଖାଯାଉଛି । ପୁଣି ଝିଅର କଥାରୁ ଯାହା ଜଣାପଡୁଥିଲା ଏ ସବୁ ପିଲାମାନଙ୍କ କଥା । ଏଥିରେ କୌଣସି ବୟସ୍କ ବ୍ୟକ୍ତି ନିଜସ୍ୱ ମତ ଦେଇନାହାନ୍ତି । ତା ହେଲେ ଏଇ ପିଲାମାନେ ଏ ସବୁ ଜିନିଷ ଶିଖିଲେ କେମିତି ? ନିଶ୍ଚୟ ସେମାନେ ଏ ସବୁ ବିଷୟରେ ନିଜ ପରିବାର କିମ୍ବା, ଅନ୍ୟ କୌଣସି ସୂତ୍ରରୁ ସୂଚନା ପାଇଥିବେ । ନିଶ୍ଚୟଭାବେ ଏହା ସୁଫଳକାରୀ ନୁହେଁ । ଆମ ପିଲାମାନଙ୍କୁ ଆମେ ଶାନ୍ତି, ସୌହାର୍ଦ୍ଦ୍ୟ, ବନ୍ଧୁତ୍ୱ, ଭାତୃତ୍ୱ ଇତ୍ୟାଦିର ଶିକ୍ଷା ଦେବା ଉଚିତ ।

ବର୍ତ୍ତମାନ ଦେଶର ଅବସ୍ଥା ଉଣାଧିକେ ଏମିତି ଏକ ସମୟ ଦେଇ ଗତି କରୁଛି ଯେଉଁଠି ବୟସ୍କମାନେ ଅପରିପକ୍ୱମାନଙ୍କ ପରି ବ୍ୟବହାର କରୁଛନ୍ତି । ଛୋଟ ଶିଶୁଟିଏ ହେଲେ ଆମେ ପ୍ରଶ୍ନର ଉତ୍ତର ଦେଇ ବୁଝେଇ ଦେଇପାରିବା, ହେଲେ ଯେଉଁମାନେ ଏବେ ବୟସ୍କ ସେମାନେ ଆଉ କଣ ଶିଖିବେ ? ଶିକ୍ଷା ପାଇଥିବା ଅନେକ ପାଠୁଆ ମାନେ ମଧ୍ୟ ମୂର୍ଖଙ୍କ ତୁଲ୍ୟ ବ୍ୟବହାର କରୁଥିବା ଆମେ ଦେଖୁଛେ । ଧର୍ମ ନାମରେ ଦେଶରେ ଏକ ପ୍ରକାର ଅରାଜକତା ବ୍ୟାପିବାରେ ଲାଗିଛି ବୋଲି କୁହାଯାଉଛି । ଅବଶ୍ୟ ଏହାଠାରୁ ଅଧିକ ଗୁରୁତର ବିଷୟମାନ ଅଛି, ଯାହା ଆମେ ଅଣଦେଖା କରିଦେଉଛେ, ହେଲେ ଧର୍ମ ବୋଲି ଶବ୍ଦ ଶୁଣିଦେଲେ ଆମେ କାହିଁକି କେଜାଣି ସତରେ ଅସହିଷ୍ଣୁ ହୋଇପଡୁଛେ । ଏହି ଅସହିଷ୍ଣୁତା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲାଣି ବୋଲି ଦାବୀ କରି ଅନେକ ବୁଦ୍ଧିଜୀବି ଏହାର ବିରୋଧ କରିବା ଆରମ୍ଭ କରିଛନ୍ତି । କିଏ କିଏ ନିଜେ ପାଇଥିବା ପୁରସ୍କାରମାନ ସରକାରଙ୍କୁ ଫେରାଇବାରେ ଲାଗିଛନ୍ତି ।

ଅସହିଷ୍ଣୁତା ଆମ ସମାଜରେ ସର୍ବଦୈବ ଉପସ୍ଥିତ ଥିଲା । ଯୁଗ ଯୁଗରୁ ଆମେ ଅସହିଷ୍ଣୁ । ମନୁଷ୍ୟମାତ୍ରକେ ଅସହିଷ୍ଣୁ । ପରଶ୍ରୀକାତରତା ଆମ ରକ୍ତର ଅଂଶ କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟର ସୁଖ ଦେଖି ସୁଖି ହେବାଭଳି ହୃଦୟ ଭଗବାନ ତିଆରି କରିବା ବନ୍ଦ କରିଦେଇଛନ୍ତି ବୋଧ ହୁଏ । ଆମେ ଅନ୍ୟର ଶ୍ରୀ ଦେଖି ଅସହିଷ୍ଣୁ ହୋଇ ଉଠୁଛେ । 'ତା ପାଖରେ ବଡ଼ ଗାଡ଼ି ଅଛି ମୋ ପାଖରେ କାହିଁକି ନାହିଁ? ସେ ବମ୍ବେ ଦିଲ୍ଲୀ ବୁଲି ଆସୁଛି, ମୁଁ ଯାଇପାରୁନି କାହିଁକି ? ସେ ବଙ୍ଗଳା ଭଳି ଘରେ ରହୁଛି ମୁଁ କାହିଁକି ଛୋଟ ଫ୍ଲାଟ ରହୁଛି ?' ଏମିତି ଅନେକ ପ୍ରଶ୍ନ ପ୍ରତି ମୁହୂର୍ତ୍ତରେ ଆମ ମନକୁ ଆନ୍ଦୋଳିତ କରୁଛି । ଏହାର ସୁଫଳ ବି ମିଳିପାରନ୍ତା, ଯଦି ଆମେ ଅନ୍ୟ ବ୍ୟକ୍ତିପରି

ଅଯବସାୟ୍ କରପାରନ୍ତେ କମ୍ବା ପ୍ରଚେଷ୍ଟା କରପାରନ୍ତେ ତେବେ ହୁଏତ ଆମକୁ ମଧ୍ୟ ସେ ସବୁ ଜନଷ ମିଳପାରନ୍ତା, କନ୍ତୁ କଛ ଲୋକ ଅସହଷ୍ଣୁ ହୋଇ ସେ ସବୁ ଜନଷ ଯେନତେନ ପ୍ରକାରେଣ ଆଣିବାକୁ ଲାଗିପଡ଼ନ୍ତି । ସାଧୁ ଉପାୟରେ ନ ହେଲେ ଅସାଧୁ ଉପାୟରେ ହେଉ, ଆମକୁ ଯାହା ଦରକାର ଆମେ ପାଇବୁ ବୋଲ ହକ୍ ଜାହର କରବାକୁ ପଛାନ୍ତ ନାହିଁ । ଏହପର କଛ ଲୋକ ଭାବନ୍ତ ସେମାନେ ଯାହା କରୁଛନ୍ତ କେବଳ ତାହା ହିଁ ଠିକ୍ । ଅର୍ଥାତ ମୋ ଜୀବନ ବଞ୍ଚିବାର ପ୍ରଣାଳୀ ସମସ୍ତେ ମାନବାକୁ ବାଧ୍ୟ । ସେଇଥିପାଇଁ ବର୍ତ୍ତମାନ ଦେଶରେ ଗୋହତ୍ୟାକୁ ନେଇ ଅନେକ ଅଘଟଣମାନ ଘଟିଗଲାଣି । ଗୋଧନ ସୁରକ୍ଷାପାଇଁ କାର୍ଯ୍ୟ କରୁଥିବା କଛ ଗୋଷ୍ଠୀ ସରକାରଙ୍କ ସୁରକ୍ଷାରେ ହେଉ ବା ନ ହେଉ, ନଜକୁ ସର୍ବେସର୍ବା ବୋଲ ଘୋଷଣା କରଦେଇଛନ୍ତ । ଗୋହତ୍ୟା କରୁଥିବା କମ୍ବା କରବାପାଇଁ ଉଦ୍ୟମ କରୁଥିବା ବ୍ୟକ୍ତିମାନଙ୍କୁ ଏମାନେ ମାରବାପାଇଁ ମଧ୍ୟ ପଛଘୁଞ୍ଚା ଦେଉନାହାନ୍ତ । ଏହା ମଧ୍ୟ ଏକ ଧରଣର ଅସହଷ୍ଣୁତା । 'ଗାଇକୁ ଆମେ ମାଆ ବୋଲ ପୂଜା କରୁଛୁ, ସେମାନେ ଗାଇକୁ ମାରବେ କାହିଁକ ?' ପ୍ରଶ୍ନ କରନ୍ତ ଅନେକ ବ୍ୟକ୍ତି । ସତକଥା । ଏହା ଅନୁଚତ । କନ୍ତୁ ସେଇ ବ୍ୟକ୍ତିମାନେ ଭୁଲଯାଆନ୍ତ ଯେ ବୁଢ଼ୀ ହୋଇଗଲେ ସେଇ ଗାଇକୁ ମରବାପାଇଁ ରାସ୍ତାଘାଟରେ ବ ସେମାନେ ହିଁ ଛାଡ଼ି ଦଅନ୍ତ । ଆଜ ବ ସହରରେ ଅନେକ ରାସ୍ତାରେ ଗାଇଗୋରୁ ଏଣେତେଣେ ବୁଲୁଛନ୍ତ କାହିଁ କେହ ଗୋରକ୍ଷା ସଂଗଠନ ସେମାନଙ୍କୁ ସୁରକ୍ଷା ଦେବାପାଇଁ ଆଗକୁ ଆସିନାହାନ୍ତ ତ ?

ଆମ ଦେଶରେ ଗୋହତ୍ୟା ଅନେକ ଯୁଗରୁ ହୋଇ ଆସୁଛ । ପ୍ରତ୍ୟକ୍ଷରେ ନ କହଲେ ବ ଅନେକ ହନ୍ଦୁ ଅଛନ୍ତ ଯେଉଁମାନେ ଗୋମାଂସ ଭକ୍ଷଣ କରୁଥିବା ସ୍ୱୀକାର କରନ୍ତ । ବଦେଶରେ ଚାକରୀ କର ରହୁଥିବା ହନ୍ଦୁମାନେ ବେଳେ ବେଳେ ଅନଚ୍ଛାରେ ଆଉ ବେଳେ ବେଳେ ପରୀକ୍ଷଣ ଭତ୍ତିରେ ଗୋମାଂସ ଖାଇଛନ୍ତ ବୋଲ ନଶ୍ଚୟ କହବେ । ବଶ୍ୱର ଏକ ବୃହତ ଜନସଂଖ୍ୟା ଗୋମାଂସକୁ ଭକ୍ଷଣ କରେ । ତେବେ ଭାରତରେ ବ କରଲେ ସେମାନଙ୍କୁ ଅସମ୍ମାନ କରବା ବା ହତ୍ୟା କରବା ଅଧିକାର କାହାର ଅଛ ? ଯଦ ଗୋମାଂସ ଖାଇବା ମନା ତା ହେଲେ ଭାରତରେ ଚାଲୁଥିବା ଗୋହତ୍ୟାଶାଳା ମାନଙ୍କୁ ବନ୍ଦ କରବା ଉଚତ ହେବ । ବଶ୍ୱର ଦ୍ୱତୀୟ ସର୍ବାଧିକ ଗୋମାଂସ ଭାରତରୁ ରପ୍ତାନୀ ହୁଏ ବୋଲ ଶୁଣିଛ, ଏହା କପର ସମ୍ଭବ ହେଉଛ ? ବ୍ୟବସାୟ ପାଇଁ ଗାଇକୁ ମାରଲେ ଦୋଷ ନାହିଁ, କନ୍ତୁ ଖାଇବାକୁ ମନା ??? ଏମିତ ଦୁଇମୁହାଁ ନୀତ କଏ ତଆର କରଲା ?

'ଦୃଢ଼ ଓ ସ୍ୱଷ୍ଟବାଦତାର ପୁରସ୍କାର ହତ୍ୟା ।' ବଗତ ବର୍ଷକ ମଧ୍ୟରେ ଭାରତର ଅନେକ ବଖ୍ୟାତ ଲେଖକମାନଙ୍କୁ ଦନଦପହରରେ ଘରେ ପଶି ହତ୍ୟା କରାଯାଇଛ, ଏବଂ ବଗତ ଦନରେ କର୍ଣ୍ଣାଟକର ଜଣେ ପ୍ରଖ୍ୟାତ ସାହତ୍ୟାନୁରାଗୀ ଓ ଅଭନେତା ତଥା ଲେଖକ





ଗିରିଶ କର୍ନ୍ନାଡ଼ଙ୍କୁ ହତ୍ୟା କରାଯିବ ବୋଲି ଧମକ ମଧ୍ୟ ମିଳିଛି । ଅର୍ଥାତ ସତ୍ୟବାଦିତା ଉପରେ ଅଙ୍କୁଶ ଲଗାଯିବାର ବ୍ୟବସ୍ଥା କରାଯାଉଛି କହିଲେ ଚଳିବ । କିଏ ଏ ସବୁ କରୁଛି ? ଏବଂ କାହିଁକି ? ଏ ସବୁ ଘଟଣା ଏବେ ଅଧିକ ହେଉଛି ବୋଲି ଏକ ସର୍ବେକ୍ଷଣରୁ ଜଣା ପଡ଼ିଛି । ଅସହିଷ୍ଣୁତାକୁ ନେଇ ବଢ଼ିଥିବା ଅପରାଧର ମାତ୍ରା ବିଗତ ବର୍ଷମାନଙ୍କ ତୁଳନାରେ ପଚିଶି ପ୍ରତିଶତ ଅଧିକ ହୋଇଛି । ଯାହା ବାସ୍ତବିକ ଚିନ୍ତାର ବିଷୟ । ସମାଜକୁ ବିଭାଜନ ଆଡ଼କୁ ଠେଲି ଦିଆଯାଉନାହିଁ ତ ? ହିନ୍ଦୁ ମୁସଲମାନ ଆଦି ଭିନ୍ନ ଭିନ୍ନ ଧର୍ମାବଲମ୍ବୀମାନଙ୍କୁ ଅଲଗା କରିବା ଯୋଜନା କରାଯାଉନି ତ ? ଆଜିଯାଏଁ ଶାନ୍ତିରେ ଏକତ୍ର ବସବାସ କରୁଥିବା ଲୋକମାନଙ୍କୁ ଧର୍ମନାମରେ ଅଶାନ୍ତ କରାଯାଉନି ତ ? ଆମର ବୁଦ୍ଧିଜୀବିମାନଙ୍କୁ ଏମିତି ଲାଗୁଛି । ଅର୍ଥାତ ଏହା ସତ ହୋଇପାରେ ।

ସମାଜରେ ପ୍ରତିଷ୍ଠିତ, ଲେଖକ, ସମାଜସୁଧାରକ, ଅଭିନେତା, ସାମ୍ବାଦିକ, କବି ଆଦି ଅନେକ ବ୍ୟକ୍ତି ନିଜ ନିଜ ପୁରସ୍କାର ସରକାରଙ୍କୁ ଫେରାଇ ଦେଇ ଅଭିଯୋଗ କରିଛନ୍ତି । ଦିନକୁ ଦିନ ଏମିତି ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧିପାଇବାରେ ଲାଗିଛି । ସେମାନଙ୍କ ମତରେ ସମାଜରେ ଅଶାନ୍ତିର ବାତାବରଣ ସୃଷ୍ଟି କରାଯାଉଛି । ଯାହା ଦେଶର ଭବିଷ୍ୟତ ପାଇଁ ଏକ ଅଭିଶାପ ହୋଇପାରେ । ଅସହିଷ୍ଣୁତା ଦିନକୁ ଦିନ ବୃଦ୍ଧିପାଇବାକୁ ଲାଗିଛି । ଯାହା କଦାପି ଉଚିତ ନୁହେଁ । ସତ କଥା, କିନ୍ତୁ ପୁରସ୍କାର ଫେରାଇ ଅଭିଯୋଗ କରି ଏହାର କଣ ପରିବର୍ତ୍ତନ ସେମାନେ ଆଣିବାକୁ ଚାହୁଁଛନ୍ତି ? ବରଂ ବୁଦ୍ଧିଜୀବିମାନେ ଏକତ୍ରିତ ହୋଇ କୌଣସି ଏକ ପନ୍ଥା ଅନୁସରଣକରି ଯଦି ଭାରତର ଜନତାଙ୍କୁ ଶିକ୍ଷିତ କରିପାରନ୍ତେ, ତେବେ ହୁଏତ ଏହାର କିଛି ସୁଫଳ ମିଳିପାରନ୍ତା । ଲୋକମାନଙ୍କୁ ବୁଝାଇବା ଦରକାର ଯେ ଏହି ମହାନ ଦେଶରେ ଅସହିଷ୍ଣୁତାର କୌଣସି ସ୍ଥାନ ନାହିଁ । ବସୁଦେବ କୁଟୁମ୍ବକମ୍‌ର ଧ୍ୱଜା ବହନ କରୁଥିବା ଏହି ଦେଶରେ ପରସ୍ପରପ୍ରତି ଆକ୍ରୋଶ ମନୋଭାବ କଦାପି ଉଚିତ ନୁହଁ । ସର୍ବୋପରି ଏହି ଦେଶକୁ ଚଳାଉଥିବା ସରକାରମାନେ ନିଜର ଶାସନ ବ୍ୟବସ୍ଥାରେ ବହୁତ ପଦକ୍ଷେପ ନେଇ ପରିବର୍ତ୍ତନ ଆଣିବା ଉଚିତ ହେବ ବୋଲି ଆମେ ଉଚିତ ମନେ କରୁ ।

ଅନେକ ତ୍ରୁଟି ଆମ ଦେଶର ଶାସନ ବ୍ୟବସ୍ଥାରେ ରହିଛି, ହୁଏତ ସେ ସବୁ ସୁଧୁରିଗଲେ ଦେଶ କିଛିମାତ୍ରାରେ ସୁଧୁରି ପାରନ୍ତା । ସାଧାରଣ ପିଉନ୍ ଚାକିରୀ କରିବାପାଇଁ ଅନ୍ୟୁନ ମାଟ୍ରିକ୍ ପାସ କରିବା ଉଚିତ ବୋଲି ନିୟମ ଥିବା ବେଳେ ଏହି ଦେଶର ସର୍ବେସର୍ବା ହେଉଥିବା ନେତା ମନ୍ତ୍ରୀଙ୍କ ପାଇଁ କୌଣସି ନିମ୍ନତମ ଶିକ୍ଷାଗତ ଯୋଗ୍ୟତା ନାହିଁ । ଅପରାଧିକ ରେକର୍ଡ଼ଥିବା ବ୍ୟକ୍ତିଙ୍କୁ ଚାକିରୀ କରିବାକୁ ଦିଆଯାଉ ନଥିବା ବେଳେ ସଦ୍ୟ ସମାପ୍ତ ବିହାର ବିଧାନସଭାର ୨୩୪ ଜଣଙ୍କ ମଧ୍ୟରୁ ଅନ୍ୟୁନ ୮୪ ଜଣଙ୍କ ବିରୋଧରେ ଗୁରୁତର ଅପରାଧିକ ମାମଲା ରହିଥିବା ଜଣାପଡ଼ିଛି । ପ୍ରଶାସନିକ ସେବାରେ କାମ କରିବାପାଇଁ





ତ୍ରିସ୍ତରୀୟ ପରୀକ୍ଷା ବ୍ୟବସ୍ଥା ଥିବା ବେଳେ ସେହି ପ୍ରଶାସନିକ ଅଧିକାରୀଙ୍କୁ ନିୟନ୍ତ୍ରଣ କରୁଥିବା ନେତାମନ୍ତ୍ରୀମାନେ କେତେ ଶିକ୍ଷିତ ତାହା କେହି ଦେଖୁନାହାନ୍ତି । ଆମ ମତରେ ସରକାରର ଅଂଶ ହେବାପାଇଁ ଇଚ୍ଛୁକ ବ୍ୟକ୍ତିମାନଙ୍କୁ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ରହୁ । ନିର୍ବାଚନରେ ଅଂଶଗ୍ରହଣ କରିବାପୂର୍ବରୁ ସେମାନଙ୍କୁ ଆନୁଷ୍ଠାନିକ ଭାବରେ କିଛି ଶିକ୍ଷା ଦିଆଯାଉ । ସଂସଦ ଚାଲୁଥିବା ସମୟରେ ପ୍ରତିଦିନ ସମସ୍ତ ସଦସ୍ୟ ଉପସ୍ଥିତ ରହିବା ବାଧ୍ୟତାମୂଳକ ହେଉ । ଦେଶ ପାଇଁ ଉଚିତ ବୋଲି ଚିନ୍ତା କରାଯାଉଥିବା ବିଧେୟକ ମାନଙ୍କୁ ସର୍ବସମ୍ମତି କ୍ରମେ ତୁରନ୍ତ ପାସ କରାଯାଉ । ଦେଶରେ ଅଗଣିତ ପ୍ରାନ୍ତୀୟ ଓ ଜାତୀୟ ରାଜନୈତିକ ଦଳକୁ ଅନୁମତି ଦିଆନଯାଇ କେବଳ ଦୁଇଟି କିମ୍ବା ତିନୋଟି ମୁଖ୍ୟ ଦଳ ଗଠନ କରାଯାଉ । ଏହାଫଳରେ ରାଜନୈତିକ ଘୋଡ଼ାବ୍ୟାପାର କମ କରିହେବ । ଧର୍ମ ନାମରେ ନିଜର ଦଳଗତ ବ୍ୟବସ୍ଥା କରୁଥିବା ସମସ୍ତ ରାଜନୈତିକ ଦଳ ପ୍ରତ୍ୟାହାର ହେଉ । ଏହିପରି ଅନେକ ବ୍ୟବସ୍ଥା ଗ୍ରହିଁଲେ କରାଯାଇ ପାରନ୍ତା, କିନ୍ତୁ ବୁଦ୍ଧିଜୀବିଙ୍କ ନିରବତା ହେତୁ ଏ ସବୁ ସମ୍ଭବ ହେଉନାହିଁ । ଏବେ ସମୟ ଆସିଛି, ବୁଦ୍ଧିଜୀବିମାନେ ଏ ବିଷୟରେ ଚିନ୍ତା କରି ଦେଖନ୍ତୁ । ଦେଶକୁ ପରିବର୍ତ୍ତନର ଆବଶ୍ୟକତା ରହିଛି, ଏଥିରେ ସାମିଲ ହୁଅନ୍ତୁ । ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରନ୍ତୁ, ପ୍ରତ୍ୟେକ ଭାରତବାସୀଙ୍କ ମନରେ ଭାରତୀୟତାର ବହ୍ନି ଜଳଉଠିଲେ, ସରକାର ନିଶ୍ଚୟ ଭାବେ ଜନମୁଖି ହେବେ ଓ ଦେଶର ଉନ୍ନତମୂଳକ କାର୍ଯ୍ୟକ୍ରମ କରିବେ ହିଁ କରିବେ ।

ବିଦେଶରେ ଭାରତର ଛବି ସୁଧୁରିଥିବା ସମୟରେ ଦେଶର ଅଭ୍ୟନ୍ତରରେ ଅସହିଷ୍ଣୁତା ବୃଦ୍ଧିପାଉଥିବା ଏକ ଅସୁନ୍ଦର କଥା । ଏହାକୁ ନେଇ ବିଶ୍ୱ ଗଣମାଧ୍ୟମମାନେ ମଧ୍ୟ ସ୍ୱରଉତ୍ତୋଳନ କରିଲେଣି । ସମୟ ଆସିଛି, ସରକାର ଦେଶରେ ଅସହିଷ୍ଣୁତା ବୃଦ୍ଧି କରୁଥିବା ତତ୍ତ୍ୱମାନଙ୍କୁ ଦମନ କରନ୍ତୁ । ଦେଶକୁ ଶାନ୍ତି ଓ ସୌହାର୍ଦ୍ଧ୍ୟର ପଥରେ ଆଗକୁ ନେଇଯାଆନ୍ତୁ ।

ଦଶହରା ଏବଂ ପରେ ପରେ ଦିପାବଳୀର ପାର୍ବଣ ପର୍ବ ସମାପନ ପରେ କାର୍ତ୍ତିକପୂର୍ଣ୍ଣିମା ପାଇଁ ଆମେ ଅପେକ୍ଷା କରୁଥିବା ସମୟରେ ଆପଣମାନଙ୍କୁ ଉପହାର ଦେଉଛି ଚଳିତ ମାସର ଆହ୍ୱାନ ଇ-ପତ୍ରିକା । ଆଶା କରୁଛି ଆପଣଙ୍କୁ ଏହା ପୂର୍ବ ସଂସ୍କରଣ ମାନଙ୍କ ପରି ଭଲ ଲାଗିବ ।

ଧନ୍ୟବାଦ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା - ସମ୍ପାଦକ

# ଚଳିତ ସଂସ୍କରଣରେ...



**http://www.facebook.com/odiaparibar**



ଏହି ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ







# ଦୀପାବଳୀ ଅଭିନନ୍ଦନ

ଆହ୍ୱାନ ଇ-ପତ୍ରିକାର ଆଗାମୀ ସଂସ୍କରଣ ଆସନ୍ତା ମାସ (ଡିସେମ୍ବର) ଦଶ ତାରିଖରେ ପ୍ରକାଶିତ ହେବ, ନିଜ ଲେଖା ପତ୍ରିକାରେ ପ୍ରକାଶିତ କରିବା ଇଚ୍ଛୁକ ଲେଖକଲେଖିକା ନିଜ ଲିଖିତ କୃତିକୁ ଆମ ନିକଟକୁ ଇମେଲ୍‌ଦ୍ୱାରା ପଠାଇ ପାରିବେ କିମ୍ବା ଚିଠିଦ୍ୱାରା ପଠାଇ ପାରିବେ । ଅଧିକ ସୂଚନା ପାଇଁ ପତ୍ରିକାର ଶେଷ ପୃଷ୍ଠାକୁ ପଢ଼ନ୍ତୁ ।

**http://www.facebook.com/groups/aahwaan**

# ଶିକ୍ଷା



ହମାଂଶୁ ଶେଖର ବାରକ୍

ଶୁଣି ଅଛ ଶାସ୍ତ୍ରେ ବଦ୍ୟାର ଉଦ୍ଦେଶ୍ୟ
ମାନବ ଜାତର ମୁକ୍ତି
ଦେହ ମନ ଆତ୍ମା ହୁଏ ବକଶିତ
ଅନ୍ତର ପାଏ ତୃପତ ।।

ପାଇ ଉଚ୍ଚ ଶିକ୍ଷା ଜୀବନ ମୋହର
ଭସେ ଅଶାନ୍ତ ସାଗରେ
ଅସ୍ଥିର ମୋ ମନ ବହେ ବାତ ସମ
ଭନ୍ନ ଦଗ ବଦଗରେ ।।

ମନେ ହୁଏ ଆଜ ହଗ୍‌ଉଛ ଶିକ୍ଷା
ମୌଳକ ଉଦ୍ଦେଶ୍ୟ ତାର
ନ କଲେ ଏହାର ତୁରତ ସଂସ୍କାର
ହେବନ ରଷ୍ଟ୍ର ସୁଧାର ।।

ଅର୍ଥ ଉପାର୍ଜନ କର ମୂଳ ଲକ୍ଷ୍ୟ
ଶିକ୍ଷାନୀତ ପ୍ରଣୟନ
ଅର୍ଥରେ କ ଚତ୍ତ ହୋଇବ ପ୍ରଶାନ୍ତ
ଅର୍ଥ ଅନର୍ଥ କାରଣ ।।

ନାହିଁ ଦେଶପ୍ରେମ ତ୍ୟାଗ ସ୍ନେହ ପ୍ରୀତ
ଶିକ୍ଷା ପ୍ରଣାଳୀର ଅଂଶ
ପୁସ୍ତକ ପଠନ ପରୀକ୍ଷା ଉତ୍ତୀର୍ଣ୍ଣ
ଜୀବନ କରେ ନୀରସ ।।





ବଢ଼ଇ ବେକାର ବଢ଼େ ବ୍ୟଭିଚାର
ଶାସନ ଦୁର୍ନୀତିଗ୍ରସ୍ତ
ବଢ଼ଇ ଧର୍ଷଣ ବିକୃତ କାମନା
ନାରୀ ହୁଏ ନିର୍ଯ୍ୟାତିତ ।।
ହେଉଛି ଉଦୟ ସନ୍ତ୍ରାସବାଦର
ଶିକ୍ଷା ହୋଇ ନୀତିହୀନ
ବିଲୁପ୍ତ ହେଉଛି ମାନବବାଦର
କେହି ନୁହେଁ ସଚେତନ ।।
ଆହେ ବୁଦ୍ଧିଜୀବୀ ହେ ଶାସକଗଣ
ଶିକ୍ଷା ପ୍ରତି ଦୃଷ୍ଟି ଦିଅ
ଦେଶର ବିପତ୍ତି ଦୂରୀଭୂତ ପାଇଁ
ସରବେ ପାଞ୍ଚ ଉପାୟ ।।

ଇମେଲ୍ - hsbarik1970@gmail.com

# ମୁଁ ପୁରସ୍କାର ଫେରାଇବନି



ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

*ମୁଁ କାହିଁକି ପୁରସ୍କାର ଫେରେଇବି ନାହିଁ !!!*

'ସତ କହ ବାପ, ମୁଁ ପୁରସ୍କାର ଫେରେଇ ଦେଲେ କଣ ଭଲ ଦିନ ଆସିଯିବ ? ମୁଁ କେବେ କଣ ପୁରସ୍କାର ପାଇଥିଲି ସେ କଥା କିଏ ମନେ ରଖିଛି ? ତୋର ମନେ ଅଛି କି ? କେବେ ଆଉ କୋଉ ଦିନ ସେ ପୁରସ୍କାର ପାଇଥିଲି ? କିଏ ଦେଇଥିଲେ ? ପୁରସ୍କାର ସହ ମୋତେ କଣ କଣ ମିଳିଥିଲା ? କେଉଁ ଖବର କାଗଜରେ ଫଟୋ ଆସିଥିଲା ? ପୁରସ୍କାର ପାଇବା ପରେ କେତେଜଣ ଲୋକ ମୋତେ ଅଭିନନ୍ଦନ ବାର୍ତ୍ତା ଦେଇଥିଲେ ? ସତ କହୁଛିରେ ଟୁକୁନା, ମୋର କିଛି ବି ମନେ ନାହିଁ ।' ହସି ହସି କହୁଥିଲେ ଆମ ସାହିରେ ରହୁଥିବା ଜଣେ ବରିଷ୍ଠ ଲେଖକ ।

ତଥାପି ମନ ମାନୁନଥିଲା, କହିଲି, 'ମଉସା, ସମସ୍ତେ ଯେତେବେଳେ ପୁରସ୍କାର ଫେରେଇ ନିଜର ଅଭିଯୋଗ ବୟାନ କଲେଣି, ତୁମର କଣ ମନ ହେଉନି ଏମିତି କରିବା ପାଇଁ ? ସତରେ କଣ ସମାଜରେ ଅସହିଷ୍ଣୁତା ବୃଦ୍ଧି ପାଉନାହିଁ ? ଛୋଟ ଛୋଟ କଥାରେ ଲୋକମାନେ ପରସ୍ପର ପ୍ରତି ଆକ୍ରୋଶମୂଳକ ବ୍ୟବହାର କରୁନାହାନ୍ତି ? ଜାତି ଆଉ ଧର୍ମ ନାଁରେ କଣ ଏଠି ମରଣାନ୍ତକ ଆକ୍ରମଣ ସହ ହତ୍ୟା ହେଉନାହିଁ ? ଏ ସବୁ







କିଣ ଘିର କଥା ? ଆପଣଙ୍କ ପରି ପାଠୁଆ ଆଉ ସମ୍ମାନାଷ୍ପଦ ବରେଣ୍ୟ ବ୍ୟକ୍ତିମାନେ ଯଦି ପ୍ରତିବାଦ କରିବେ ନାହିଁ, ତା ହେଲେ ସାଧାରଣ ଜନତା କେମିତି ସାହାସ ପାଇବେ ?'

ମଉସା ହସିଦେଇ କହିଲେ, 'କହିଲୁ ଦେଖି ଏହି ଦେଶରେ ଅସହିଷ୍ଣୁତା କେବେ ନଥିଲା ? ଆରେ କଥାରେ ଅଛି, ଗୋଟିଏ ଘରେ ଦୁଇଟି ମାଠିଆ ରହିଲେ ପରସ୍ପର ସହ ବାଜିବ ଆଉ ଟନ୍ ଟାନ୍ ଢଣ୍ ଢାଣ୍ ଶବ୍ଦ ହେବହିଁ ହେବ । ଆଉ ଆମ ଦେଶରେ ତ ଅନେକ ମାଠିଆ । କିଏ ହିନ୍ଦୁ, କିଏ ମୁସଲମାନ୍, କିଏ ଖ୍ରୀଷ୍ଟିଆନ୍... କେତେ ଧର୍ମ କହିହେବନି । ଏକାଠି ରହିବେ ଏକାଠି ଖାଇବେ କିନ୍ତୁ କଥା କଥାକେ ପରସ୍ପରକୁ ଶତ୍ରୁପରି ଆଚରଣ କରିବାକୁ ପଛାଇବେନି । ଇୟେ କଣ ଖାଲି ଆମ ଦେଶରେ ହେଉଛି ? ଦେଖୁନୁ କି ମଧ୍ୟପ୍ରାଚ୍ୟର ଖବର ! ସେଇଠି ତ ନିଜ ଭାଇବନ୍ଧୁମାନେ ପରସ୍ପରକୁ ଗଳାକାଟି ହତ୍ୟା କରିବାରେ ଲାଗିଛନ୍ତି । ମନୁଷ୍ୟ ଜନ୍ମରୁ ହିଁ ପରଶ୍ରୀକାତର ଓ ଇର୍ଷ୍ୟାଳୁ । ଅନ୍ୟର ସୁଖ ଦେଖିପାରେନି । ଯେତେ ଭଦ୍ର ହେଇଥିଲେ ସୁଦ୍ଧା ମନୁଷ୍ୟଗତ ପ୍ରବୃତ୍ତି କେବେ କିଏ ଛାଡ଼ି ପାରିଛି ? ଭାରତ ସ୍ୱାଧୀନ ହୋଇ ସତୁରି ବର୍ଷ ହୋଇଗଲାଣି । ଏହି ସମୟ ମଧ୍ୟରେ ଏହି ଦେଶରେ ଅଗଣିତ ଦଙ୍ଗା ହୋଇଛି । ହିନ୍ଦୁ ମୁସଲମାନ ପରସ୍ପରକୁ ହାଣିମାରିଛନ୍ତି । ବିଭାଜନ ସମୟର ବିଭିଷିକା କିଏ ନ ଜାଣିଛି ? କାଶ୍ମୀରରେ ଆତଙ୍କବାଦୀମାନେ ଯେବେ ପ୍ରବେଶ କଲେ, ସେଠାରେ ରହୁଥିବା ଅଗଣିତ ହିନ୍ଦୁ ପରିବାର ବିତାଡ଼ିତ ହୋଇ ଦେଶର ବିଭିନ୍ନ ପ୍ରାନ୍ତରେ ଶରଣାର୍ଥୀ ଭାବରେ କାଳାତିପାତ କରୁଛନ୍ତି । ଏହା କଣ ମିଥ୍ୟା ? ବଙ୍ଗଳାଦେଶର ସୀମାରେ ଅଣସଂଗଠିତ ଭାବରେ ଶରଣାର୍ଥୀ ଦେଶରେ ପଶିଛନ୍ତି ଏବଂ ସମୟ ସମୟରେ ଦେଶରେ ଅନେକ ସଂଗଠିତ ହତ୍ୟାକାଣ୍ଡ ଓ ବିଭିନ୍ନ ବ୍ୟାଭିଚାରକୁ ଭିଆଇଛନ୍ତି ଏହା କଣ ମିଛ ? ନାଗାଲାଣ୍ଡରେ ଜେଲରେ ଥିବା ଜଣେ ଅପରାଧୀକୁ ଲୋକମାନେ ଜେଲରୁ ବାହାରକୁ ନେଇ ସର୍ବସମ୍ମୁଖରେ ମାରିଦେଲେ, ଏହା କଣ ମିଛ ? ରାଜଧାନୀ ଦିଲ୍ଲୀରେ ଏକ ଚଳନ୍ତା ବସ ଭିତରେ ଏକ ମହିଳା ସହ ଅନେକ ଲୋକ ଦୁରାଚାର କରି ମାରିଦେଲେ ଏହା କଣ ମିଛ ? ମୁମ୍ବାଇ ବମ୍ବବ୍ଲାଷ୍ଟ କଣ ମିଛ ? ମୁମ୍ବାଇ ତାଜମହଲ ହୋଟେଲ ଉପରେ ଆକ୍ରମଣ ହେଲା ତାହା କଣ ମିଛ ? ଏ ସବୁ ହେଉଛି କାହିଁକି ? ଏହି ସବୁର ପଛରେ ବାପ କେବଳ ଗୋଟିଏ କାରଣ ତାହା ହେଉଛି ଅସହିଷ୍ଣୁତା । ସେତେବେଳେ ବି ସରକାର ମାନେ ଥିଲେ ଏବେ ବି ଅଛନ୍ତି । ସବୁ ଘଟଣାକୁ ସରକାରଙ୍କ ସହ ଯୋଡ଼ି ଦେଖିବା ଠିକ୍ ନୁହେଁ ?

ଯଦି ସେତେବେଳେ ମୁଁ ନୈତିକତା ହେତୁ ହେଉ ଅବା ଅନ୍ୟ କୌଣସି କାରଣରୁ ହେଉ ପ୍ରତିବାଦ କରିନଥିଲି, ଏବେ କରିବାର ନୈତିକତା ମୋର ନାହିଁ । ଆଉ ବାପ ପୁରସ୍କାର ଫେରେଇଦେଲେ କଣ ଲୋକମାନେ ସୁଧୁରିଯିବେ ? ନା, ଲୋକଙ୍କୁ ସୁଧାରିବାକୁ ହେଲେ ଦର୍କାର





ଲୋକଙ୍କୁ ଶିକ୍ଷାଦେବା । ଭଲମନ୍ଦ ବିଷୟରେ ସଚେତନ କରିବା । ଯେଉଁ ବନ୍ଧୁମାନେ ପୁରସ୍କାର ଫେରାଇବାକୁ ତତ୍ପର ହେଉଛନ୍ତି, ଅନ୍ତତଃ ମାନବିକତା ଦୃଷ୍ଟିରୁ ସଚେତନତା ସୃଷ୍ଟିପାଇଁ ସେମାନେ ସାହିତ୍ୟ ରଚନା କରିପାରିବେ ! ଗଣମାଧ୍ୟମରେ ଆସି ଲୋକମାନଙ୍କ ଅନ୍ତର୍ଚେତନାକୁ ଉଦ୍‌ବୁଦ୍ଧ କରିପାରିବେ । ବୁଝେଇପାରିବେ ଯେ ଏ ଦେଶ ଏକ ସର୍ବଧର୍ମ ସମନ୍ୱୟର ଦେଶ । ଏଠି ଅସହିଷ୍ଣୁତାର ସ୍ଥାନ ନାହିଁ । ଯୁଗ ଯୁଗରୁ ବସୁଦେବ କୁଟୁମ୍ବକମ୍ ର କଥା କହିଆସୁଥିବା ଏହି ମହାନ ଦେଶରେ ଏମିତି ଅସହିଷ୍ଣୁତାକୁ ପ୍ରଶ୍ରୟ ଦିଆଯିବା ଉଚିତ ନୁହେଁ । ଏମିତି କେତେଜଣ କରିଛନ୍ତି ? କେହି ବି ନାହିଁ । କାହିଁକି ଜାଣୁ, କାରଣ ସେମାନେ ଜାଣିଛନ୍ତି, ଆଜିର ଯୁଗରେ ଲୋକମାନେ ଲେଖକମାନଙ୍କ ଅପେକ୍ଷା ଅଧିକ ସିନେତାରକାଙ୍କୁ ଚିହ୍ନନ୍ତି । ଟିଭିରେ ସିନେମାର ପରଦାରେ ନାୟକ କେମିତି ସିଗାରେଟ୍ ପିଏ ତାହା ଦେଖି ଶିଖିବା ଲୋକ ଆମ ଦେଶରେ ଅଗଣିତ ଅଛନ୍ତି, କିନ୍ତୁ ଲେଖକଙ୍କ ବହିଟିଏ ପଢ଼ି ନିଜକୁ ସୁଧାରିବା ଲୋକ ବହୁତ କମ । ତେଣୁ ସେମାନେ ଆଉ କଣ କରିପାରିବେ ? ସରକାରଙ୍କ ଦୃଷ୍ଟିକୁ ଆସିବା ପାଇଁ ପୁରସ୍କାର ଫେରେଇବାରେ ଲାଗିଛନ୍ତି । ଯଦି ଏହା ଦ୍ୱାରା କିଛି ଲାଭ ହେଉଥାନ୍ତା ତା ହେଲେ ଜଣେ ପୁରସ୍କାର ଫେରାଇବା ପରେ ପରେ ସରକାର ତୁରନ୍ତ ପଦକ୍ଷେପ ନେଇ କମିଟି ଗଠନ କରି ଲେଖକମାନଙ୍କ ମନର ଆକ୍ରୋଶ ବିଷୟରେ ଚିନ୍ତା କରିବାକୁ ବାଧ୍ୟ ହୋଇଥାନ୍ତେ, କିନ୍ତୁ ଯେଉଁଠି ସାଧାରଣ ଲୋକଙ୍କୁ ଦିନକୁ ଦୁଇ ଓଳି ଖାଇବାକୁ ଦେବାପାଇଁ ସରକାର ଅସମର୍ଥ ହେଉଛନ୍ତି, କିରାଣା ଦୋକାନରେ ଡାଲି ଗୁଡ଼ିଙ୍କ ଦର ହୁହୁ ହୋଇ ବଢ଼ି ଚାଲିଥିବାର ଚିନ୍ତା ବଢ଼ିଚାଲିଛି, ସେଇଠି ଲେଖକମାନଙ୍କ ଆକ୍ରୋଶ କଥା କିଏ ପଚାରେ ? ତେଣୁ ବାପ ମୁଁ ପୁରସ୍କାର ଫେରାଇବି ନାହିଁ । ବରଂ ଯଦି ତୁ ପାରୁଛୁ, ମୋର ଗୋଟେ ଲେଖା ଖବର କାଗଜରେ ଛାପି ଦେ ? ଯଦି କିଏ କେଉଁଠି ତାକୁ ପଢ଼ି ସୁଧୁରିପାରିବ ଆଉ କିଛି ଲୋକଙ୍କୁ ବୁଝାଇ ପାରିବ, ତା ହେଲେ ମୋତେ ଭଲ ଲାଗିବ ।'



ଏହି ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ

# ଫୋବିୟା କଣ ?



ଡାକ୍ତର ସମ୍ରାଟ କର

*ଭିଡ଼କୁ ଯିବାକୁ ଭୟ କରୁଛନ୍ତି :*

*ଏହା ଫୋବିୟା ନୁହେଁ ତ ?*

[ ମନରେ ଅଛି କଅଣ ? ପୁସ୍ତକରୁ ଉପସ୍ଥାପିତ ]



ମାନୁ ମାଉସୀଙ୍କୁ ମୁଁ ପୁରୀ ନବକଳେବର ରଥଯାତ୍ରା ଦେଖିଯିବାପାଇଁ କହିଲି । ସେ ମୋତେ ବହୁତ ଭଲ ପାଆନ୍ତି । ମା', ଖୁଡ଼ୀ ସମସ୍ତଙ୍କୁ ନେଇ ନବକଳେବର ରଥଯାତ୍ରା ଦେଖାଇବାର ଇଚ୍ଛା ମୋର ଥିଲା । ମାନୁ ମାଉସୀଙ୍କୁ ଡାକିବାରୁ ସେ ମନାକଲେ । ମୁଁ ତାଙ୍କୁ କାରଣ ପଚାରିବା ପରେ କହିଲେ ମୁଁ ପିଲାବେଳେ ଥରେ ପୁରୀ ରଥଯାତ୍ରାକୁ ଯାଇଥିଲି, ସେଠି ଏତେ ଭିଡ଼ଥିଲା ଯେ ମୋତେ କିଏ ଚାରିକଡ଼ରୁ ଚାପିଦେବା ପରି ଲାଗିଲା । ସତେ ଯେମିତି ଗୋଟିଏ ଶକ୍ତ ଦଉଡ଼ିରେ ମୋତେ କେହି ବାନ୍ଧିଦେଇଛି । ମୁଁ ଅଣନିଶ୍ୱାସୀ ହୋଇ ପଡ଼ିଥିଲି । ସେହି ଦିନଠାରୁ ମୋତେ ଭିଡ଼କୁ ଯିବାକୁ ଡର ଲାଗେ । ମୁଁ ଗହଳିଆ ଜାଗାକୁ ଜମାରୁ ଯାଏ ନାହିଁ । ମୋର ସେଇ ଦିନ କଥା ମନେ ପଡ଼େ । ଆଜି ପର୍ଯ୍ୟନ୍ତ ସେ ଅନୁଭୂତି ଭୁଲିନି । ମୁଁ ସେ ଭିଡ଼ରେ ପଶିପାରିବିନି । ତୁମେ ଯାଅ । ଏକଥା ଶୁଣି ମୁଁ କହିଲି ଏହା ଏକ ପ୍ରକାର ଅହେତୁକ ଭୟ । ଏହାକୁ ଫୋବିୟା କୁହାଯାଏ । ମୁଁ କହିଲି ଅଧିକାଂଶ ଲୋକଙ୍କ ଠାରେ ଏ ପ୍ରକାର ଭୟ ଦେଖାଯାଏ । ମାତ୍ର ଏହି ଭୟ ମାତ୍ରାଧିକ




ହେଲେ ନିଜର ଦୈନନ୍ଦିନ କାର୍ଯ୍ୟରେ ବାଧା ସୃଷ୍ଟିକରେ । ତାକୁ ରୋଗ ବୋଲି କୁହାଯାଏ ଓ ମାନସିକ ରୋଗ ଚିକିତ୍ସକଙ୍କ ପରାମର୍ଶରେ ଔଷଧ ସେବନ କଲେ ଏଥିରୁ ଉପଶମ ମିଳିଥାଏ ।

## ଫୋବିୟା କଣ ?

ଫୋବିୟା (Phobia) ହେଉଛି କୌଣସି ସ୍ଥାନ, ବସ୍ତୁ, କାର୍ଯ୍ୟ ଓ ପରିସ୍ଥିତି ପ୍ରତି ଅହେତୁକ ଭୟ । ଯେପରିକି ଅନେକ ଲୋକ ଭିଡ଼ ଭିତରକୁ ଯିବାକୁ ଭୟ କରନ୍ତି, ଉଚ୍ଚ ସ୍ଥାନକୁ ଯିବାକୁ ଭୟ କରନ୍ତି, ଘରୁ ରାସ୍ତାକୁ ଯିବାକୁ ଭୟ କରନ୍ତି, କିଛି ଜୀବଜନ୍ତୁ କ୍ଷତି କରିବନି ଜାଣିବା ସତ୍ତ୍ୱେ ଭୟ କରନ୍ତି । ସେଥିପାଇଁ ସେମାନେ ସେହି ସ୍ଥାନ, ବସ୍ତୁ ବା କାର୍ଯ୍ୟଠାରୁ ଦୂରେଇ ରହନ୍ତି ।



ପ୍ରାୟ ପ୍ରତ୍ୟେକ ଲୋକଙ୍କ ପାଖରେ ଏକ ପ୍ରକାର ଭୟ ଅଳ୍ପେଅଧିକେ ଥାଏ । ମାତ୍ର ଯେତେବେଳେ ଅତ୍ୟଧିକ ହୋଇ ମାନସିକ ବ୍ୟଥାଦିଏ ଏବଂ ନିଜର ଦୈନନ୍ଦିନ କାର୍ଯ୍ୟରେ ବାଧା ସୃଷ୍ଟିକରେ ସେତେବେଳେ ଏହା ଏକ ରୋଗ ବୋଲି ଧରାଯାଏ ।

ଅସ୍ୱାଭାବିକ ପରିସ୍ଥିତିର ଭୟାବହତାକୁ ସମ୍ଭାବନାକରି ଲୋକଟିର ମନରେ କଷ୍ଟ ହୋଇଥାଏ । ତେଣୁ ସେ ଏପରି ପରିସ୍ଥିତିଠାରୁ ଦୂରେଇ ରହିବାକୁ ଚେଷ୍ଟା କରେ ଏବଂ ଏହାର ସମ୍ମୁଖୀନ ହେଲେ ଆତଙ୍କିତ ହୋଇପଡ଼େ ।

## ଆଗାରୋଫୋବିୟା (Agarophobia):

କୌଣସି ପରିସ୍ଥିତି ପ୍ରତି ଅସ୍ୱାଭାବିକ ଭୟକୁ ଆଗାରୋଫୋବିୟା ବୋଲି କୁହାଯାଏ । ସାଧାରଣତଃ ଏ ପ୍ରକାରର ଫୋବିୟା ଲୋକମାନଙ୍କଠାରେ ଅଧିକ ଦେଖାଯାଏ । ପୁରୁଷମାନଙ୍କ ତୁଳନାରେ ସ୍ତ୍ରୀମାନଙ୍କଠାରେ ଅଧିକ ଦେଖାଯାଏ । ଏ ପ୍ରକାର ଫୋବିୟାରେ ମନୁଷ୍ୟ ଯେତେବେଳେ ନିଜ ପରିବାର ବା ଚିରାଚରିତ ପରିସ୍ଥିତିରୁ ଦୂରେଇଯାଏ ତାକୁ ଅହେତୁକ ଭୟ ଲାଗିଥାଏ । ଗୋଟିଏ ପରିସ୍ଥିତିରୁ ଆଉ ଗୋଟିଏ ପରିସ୍ଥିତିକୁ ଗଲେ ଲୋକଟି ହଠାତ୍ ବିଚଳିତ ହୋଇପଡ଼େ । ତାକୁ ସାହାଯ୍ୟ କରିବାକୁ କେହିନଥାନ୍ତି । ସେହି ପରିସ୍ଥିତିକୁ ମୁକାବିଲା କରିବାପାଇଁ ତା'ର ସାହାସ ହୁଏନାହିଁ କି ସେ ଉପାୟ ପାଏ ନାହିଁ । ତେଣୁ ସେ ବିବ୍ରତ ହୋଇଯାଏ । ଉଦାହରଣ ସ୍ୱରୂପ ଘରଠାରୁ ଦୂରରେ ଏକା ରହିବା, ଭିଡ଼ ଭିତରେ ଏକା ରହିଯିବା, ଟ୍ରେନ୍ କିମ୍ବା ବସରେ ଏକାକୀ ଯାତ୍ରା କରିବା ଆଦି କାର୍ଯ୍ୟଗୁଡ଼ିକୁ ସେ ସମ୍ମୁଖୀନ ହୋଇପାରେ ନାହିଁ । ଧିରେ ଧିରେ ପରିସ୍ଥିତି ଅଧିକ ଜଟିଳ ହୋଇପଡ଼େ ।





ଲୋକଟିର ନିଜର ଦୈନନ୍ଦିନ କାର୍ଯ୍ୟ ବାଧାପ୍ରାପ୍ତ ହୁଏ । ସେ ଘରୁ ବାହାରକୁ ନ ଯାଇ, ଘରେ ରହିବାକୁ ସୁରକ୍ଷିତ ମନେକରେ । ଆଉ ଯେତେବେଳେ ବାହାରକୁ ଯାଏ କେବଳ ଜଣେ କିମ୍ବା ଦୁଇଜଣ ବିଶ୍ୱସ୍ତ ଲୋକଙ୍କ ସହ ହିଁ ଯାଏ ।

ପ୍ରଭାବ : ଏହା ସାଧାରଣତଃ ମହିଳାମାନଙ୍କ ଠାରେ ଅଧିକ ଦେଖାଦେଇଥାଏ । ଏ ରୋଗ ପ୍ରାୟତଃ ୨୫-୩୫ ବର୍ଷ ବୟସ ମଧ୍ୟରେ ହଠାତ୍ ଦେଖାଦିଏ । ଧିରେ ଧିରେ ଏହା ବୃଦ୍ଧିପାଏ । ଏବଂ ଦିନକୁ ଦିନ ଜୀବନଧାରଣ ଓ ଦିନଚର୍ଯ୍ୟା ଜଟିଳ ହୋଇଯାଏ ।

କାରଣ : ଏହା ସେରୋଟୋନିନ୍ (Serotonine), ଗାବା (GABA), ଆଡ୍ରେନାଲିନ୍ (Adrenaline), ଡୋପାମିନ୍ (Dopamine) ଆଦି ସ୍ନାୟୁନିର୍ଗତ ରସର ବିଶୃଙ୍ଖଳା ଯୋଗୁଁ ହୋଇଥାଏ । ଏକ ସୂତ୍ରରୁ ଜଣାପଡ଼ିଛି, ଯେ ନିଜର ରକ୍ତ ସମ୍ପର୍କୀୟ ଲୋକମାନଙ୍କଠାରେ ଏହି ରୋଗଥିଲେ ଏହା ହେବାର ସମ୍ଭାବନା ବଢ଼ିଯାଇଥାଏ । ତେଣୁ ଏହା ବଂଶଗତ ରୋଗମଧ୍ୟରେ ଗଣିତ ହୋଇପାରେ ।

ଚିକିତ୍ସା : ଏହି ରୋଗର ଲକ୍ଷଣ ଦେଖାଦେଲେ ଶୀଘ୍ର ମାନସିକ ରୋଗ ବିଶେଷଜ୍ଞଙ୍କ ପରାମର୍ଶ ନେବା ଉଚିତ । ଏହି ରୋଗର ଚିକିତ୍ସା, ଔଷଧ ଓ ମନସ୍ତାତ୍ତ୍ୱିକ ଚିକିତ୍ସା ଦ୍ୱାରା କରାଯାଇଥାଏ । ଏହି ରୋଗରେ ମନରୁ ଅହେତୁକ ଭୟ ଦୂର କରିବାପାଇଁ ଔଷଧ ଅତ୍ୟନ୍ତ ଉପଯୋଗୀ ହୋଇଥାଏ । ମନସ୍ତାତ୍ତ୍ୱିକ ଚିକିତ୍ସାଦ୍ୱାରା ରୋଗୀ ମନରେ ଜନ୍ମହୋଇଥିବା ଅହେତୁକ ଭୟକୁ ବୁଝାସୁଝା ଦ୍ୱାରା କମ୍ କରାଯାଇଥାଏ । ଫଳରେ ରୋଗୀମନରୁ ଭୟ କମ ହୋଇଯାଏ ।

ଏହି ରୋଗ ଯଦିଓ କୌଣସି କାରଣରୁ ଜନ୍ମ ନେଇ ନ ଥାଏ ତଥାପି ଅନେକ କ୍ଷେତ୍ରରେ ପରିସ୍ଥିତିର ଅନୁଭୂତ ହିଁ ତା'ର ଭୟର କାରଣ ହୋଇଥାଏ । ଏହାକୁ ରୋଗ ବୋଲି ଭାବି ମନୋସିକିତ୍ସକଙ୍କ ସହିତ ପରାମର୍ଶ କଲେ ଓ ନିୟମିତ ଔଷଧ ସେବନ କଲେ ରୋଗରୁ ମୁକ୍ତି ମିଳିଥା ।

ସହକାରୀ ଅଧାପକ, ମାନସିକ ରୋଗ ବିଭାଗ,
ପୁରୀଘାଟ ରୋଡ଼, କଟକ-୭୫୩୦୦୯
ମୋବାଇଲ-୯୧୩୨୪୩୩୩୩୩







# ବାବା



ଅନୁପମ ବେହେର୍

ଭରତର ତେତଶ୍ କୋଟି ଦେବାଦେବୀ
ବୁଝିପାରନ୍ତନ ଦୁଃଖ ଶହେ କୋଡ଼ିଏ କୋଟି ଜନତାଙ୍କର
ବୋଧହୁଏ...
ଜଗନ୍ନାଥଙ୍କର କାର୍ଯ୍ୟାଳୟର ଅବସ୍ଥା ବ
ଆମ ଭେଟ୍ଖିଆ ସରକାରଙ୍କ ପର ▯ ।୧ ।

ତେଣୁ
ପ୍ରକୃତର ଶ୍ରେଷ୍ଠ କୃତ ମନୁଷ୍ୟ
ନଜ ସମସ୍ୟାର ସମାଧାନ
ନଜେ ଖୋଜବାକୁ ଚେଷ୍ଟା କରେ
ସବୁଥର ପର ▯ ।୨ ।

ଜନ୍ମ ହୁଏ ନୂଆ ଜଣେ ଭଗବାନଙ୍କର
ତାଙ୍କର ଅର୍ଥହୀନ ଭଷଣ ଓ ଜାଦୁ
ମୁର୍ଖ ଭକ୍ତମାନଙ୍କୁ ପ୍ରତୀୟମାନ ହୁଏ
ଅଲୌକକତା ପର▯ ।୩ ।

ବଶ୍ୱାସର ସୌଦା ହୁଏ
ଦୁର୍ଗା ,ବଷ୍ଣୁ ,ମହେଶ୍ୱରଙ୍କର
ହୁଏ ପୁନର୍ଜନ୍ମ





ନିର୍ବୋଧ ଭକ୍ତଙ୍କୁ ଭଣ୍ଡେଇ
ଏହି ଆତ୍ମଘୋଷିତ ଭଗବାନମାନେ
ଶୋଷଣ କରିଚାଲନ୍ତି ଜୋକ ପରି ।୪ ।

କିନ୍ତୁ ଶେଷରେ ଦିନେ
ସତ୍ୟ ଆତ୍ମପ୍ରକାଶ କରେ
ମିଥ୍ୟାର ଏ ବିଶାଳ ପର୍ବତକୁ ଭଗ୍ନକରି
ତଥାକଥିତ ଭଗବାନଙ୍କର
ପର୍ଦାପଛର ରୂପ ଆସେ ସାମ୍ନାକୁ
ତଥାପି କିନ୍ତୁ ବୁଝେନା ମଣିଷ
କିଛି ଦିନ ଉତ୍ତାରୁ
ଆଉ ଜଣେ ବାବା ତାକୁ
ପ୍ରତୀୟମାନ ହୁଅନ୍ତି ଭଗବାନଙ୍କ ପରି ।୫ ।

ଇମେଲ୍ - anupam.piet.chandan@gmail.com



# ବାଃ ବାଃରେ ବେଦାନ୍ତ



କ୍ଷେତ୍ରବାସୀ ଜେନା

ଧନ୍ୟ ଧନ୍ୟ ତୁମ୍ଭ ଗୁଣ ଓ ଗାରିମା
ଲେଖିଲେ ନ ହୁଏ ଅନ୍ତ
ନାମଟି ଯେମିତ କାମଟି ସେମିତ
ବୋଲାଉଛ, ଲାଞ୍ଜିଗଡ଼େ ବେଦାନ୍ତ (୧)

ତୁମେ ପରା ଆମ ଆଶାର ଆଲୋକ
ବଞ୍ଚିବାକୁ ଦେଲ ରାହା
ମନ ଆଜ ଭରେ ତୁମର କାର୍ଯ୍ୟରେ
କହେ ଖାଲି ବାହା ବାହା (୨)

ଉଜ୍ଜ୍ୱଳ ତାରକା ପରି ତେ ଆସିଲ
ସାଥିରେ ଧରି ହସ
କି କମିଆ କଲ ସଭିଙ୍କୁ ଜଣିଲ
ଫୁଟିଲା ଚହଟ ବାସ (୩)

ରୂପ ଗୁଣ ତୁମ ଚର୍ଚ୍ଚାରେ ଗୁଞ୍ଜୁଛ

ଭୁଗୋଳ କରୁଛ ବ୍ୟାଖ୍ୟା

ସୁଖରେ ଦୁଃଖରେ ସାଥୀ ହୋଇ ତୁମେ

ବିପଦରୁ କର ରକ୍ଷା (୪)

ବାଟ ଭୁଲିଗଲେ ଦେଖାଉଛ ବାଟ

ଅନ୍ଧର ଲଉଡ଼ି ପରି

ଆନ ଦୁଃଖ ଦେଖି ତୁମର ଆଖିରୁ

ଲୋତକ ଆସଇ ଝରି (୫)

ଗର୍ବିତ ଓଡ଼ିଶା, ଗର୍ବିତ ଭାରତ

ତୁମର କୀର୍ତ୍ତିରାଜିରେ

ଗର୍ବକରେ ଆଜି ଜିଲ୍ଲା କଳାହାଣ୍ଡି

କେତେ ଇତିହାସ ସୃଷ୍ଟି କରେ (୬)

ଯାଜପୁର, ଓଡ଼ିଶା
ମୋବାଇଲ୍ - ୯୯୩୭୧୭୭୩୭୨

# ହେ ବରଷା...




ଶୁଭ୍ରାଂଶୁ କୁମାର ବଶ୍ୱାଳ


[ ୧ ]

ଶ୍ରାବଣ ଆକାଶ ସାଥେ ଘେନ ଆସେ

ଅଲୋଡା ସେଇ ଅତୀତ ,

ସେ ଲାଗି ପର ମୁଁ ବନା କାରଣରେ

ଭଜୁଥାଇ ଅବରତ ।

[ ୨ ]

ଭାର ଇର୍ଷା ଲାଗେ ବରଷାକୁ ମୋତେ

ତୁମକୁ ଦଏ ଭଜେଇ ,

ସେ ଲାଗି ତୁମକୁ ଡାକୁଛ ପାଖକୁ

ଆସ ଗୋ ଦେବ ଲୁଚେଇ ।

[ ୩ ]

ବରଷାର ମଜା ପ୍ରେମିକକୁ ଜଣା

ଆଉ ବା ଜାଣିବ କଏ ,

ତା ଛଟା କେମିତ ଶରୀରକୁ ଭେଦ

ହୃଦୟକୁ ଛୁଇଁ ଯାଏ ।

[ ୪ ]

ମିଶି ଭଜଥିଲେ ଯେଉଁ ବରଷାରେ

ଆଜ ମୁଁ ସେଦନ ଖୋଜେ ,

ସେଦନ ପାଏନା ସାଥୀ ମୋ ଆସେନା





ବିରହରେ ଏକା ଭିଜେ ।

[ ୫ ]

ତୋ ସାଥୀରେ ଡିନ୍ତି ବରଷାରେ ଥରେ
ହେଇଥିଲି ଟିକେ ଖୁସି,
ପାଉନାହିଁ ବୋଲି ପୁଣି ସେ ଦିନକୁ
ଦୁଃଖ ଲାଗେ ଆଜ ବେଶି ।

[ ୬ ]

ବରଷା ଛୁଇଁଲେ ମୋ ଦେହକୁ ଆଜ
ତୁମ କଥା ମନେ ପଡ଼େ ,
ଭିଜିଗଲେ ଆପେ ମୋ ଆଖି ଆଗରେ
ତୁମ ଛବି ଗ୍ଧିରିଆଡ଼େ ।

[ ୭ ]

ନିରବ ପ୍ରଶ୍ନରେ ଆଜ ଯାଏଁ ମୋତେ
କେତେ ତୁ ଦେଲୁଣି ଲୁହ ,
ମୋ ଆଖି ଆଉ କି ଶ୍ରାବଣକୁ କେବେ
ପରଖି ପାରିବ କହ ।

ନୟାଗଡ଼ ସ୍ୱୟଂଶାସିତ ମହାବିଦ୍ୟାଳୟ
ଓଡ଼ିଆ ବିଭାଗ
ମୋବାଇଲ-୯୪୩୯୫୭୮୧୧୬

# କାର୍ତ୍ତିକସ୍ନାନର ମାହାତ୍ମ୍ୟ



ପ୍ରତିଭା ପ୍ରିୟଦର୍ଶିନୀ

ସାଧାରଣତଃ ସୂର୍ଯ୍ୟ ନାରାୟଣ ତୁଳା ରାଶିରେ ଅବସ୍ଥାନ କରିବା ସହିତ କାର୍ତ୍ତିକ ମାସ ଆରମ୍ଭ ହୋଇଥାଏ । ସ୍କନ୍ଦ ପୁରାଣ ଆଦି ଅନେକ ଧର୍ମଗ୍ରନ୍ଥରେ କାର୍ତ୍ତିକ ସ୍ନାନ ଓ ବ୍ରତର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । କାର୍ତ୍ତିକ ମାସରେ ମାସ ସାରା ବ୍ରହ୍ମମୂହୁର୍ତ୍ତରେ କୌଣସି ନଦୀ, ପୁଷ୍କରଣୀ ବା ଜଳାଶୟରେ ସ୍ନାନ କରିବାର ବିଧାନ ରହିଛି । ଧର୍ମଶାସ୍ତ୍ର ମାନଙ୍କରେ କାର୍ତ୍ତିକ ମାସରେ କରାଯାଉଥିବା ବ୍ରତ, ସ୍ନାନ ଓ ତପକୁ, କଳିଯୁଗରେ ମୋକ୍ଷ ପ୍ରାପ୍ତିର ମାର୍ଗ ବୋଲି କୁହାଯାଇଛି । ସ୍କନ୍ଦ ପୁରାଣରେ ଉଲ୍ଲିଖିତ ଶ୍ଳୋକ ଅନୁସାରେ --

*"ନ କାର୍ତ୍ତିକ ସମୋ ମାସୋନ ସତ୍ୟେନ ସମଂ ଯୁଗମ୍*
*ନ ବେଦ ସଦୃଶଂ ଶାସ୍ତ୍ରଂ ନ ତୀର୍ଥଂ ଗଙ୍ଗା ସମମ୍ ।"*

ଅର୍ଥାତ୍ କାର୍ତ୍ତିକ ସମାନ ଦ୍ୱିତୀୟ କୌଣସି ମାସ ନାହିଁ, ସତ୍ୟ ଯୁଗ ପରି କୌଣସି ଯୁଗ ନାହିଁ, ବେଦ ସମାନ କୌଣସି ଶାସ୍ତ୍ର ନାହିଁ ଓ ଗଙ୍ଗାଙ୍କ ସମାନ କୌଣସି ତୀର୍ଥ ନାହିଁ ।

କାର୍ତ୍ତିକ ମାସର ମାହାତ୍ମ୍ୟ ପଦ୍ମପୁରାଣ ଓ ସ୍କନ୍ଦ ପୁରାଣରେ ବିସ୍ତୃତ ଭାବରେ ଉପଲବ୍ଧ । କାର୍ତ୍ତିକ ମାସରେ



ସ୍ତ୍ରୀ ମାନେ ବ୍ରହ୍ମ ମୁହୁର୍ତ୍ତରେ ସ୍ନାନ କରି ରାଧା-ଦାମୋଦରଙ୍କ ପୂଜା କରନ୍ତି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ଯେ;

*"ମାସାନାଂ କାର୍ତ୍ତିକଃ ଶ୍ରେଷ୍ଠୋ ଦେବାନାଂ ମଧୁସୂଦନଂ*
*ତୀର୍ଥଂ ନାରାୟଣାଖ୍ୟଂ ହି ତ୍ରୀତୟଂ ଦୁର୍ଲଭଂ କଲୌ ।"*

ଏହି ଶ୍ଲୋକ ଅନୁସାରେ, ଭଗବାନ ବିଷ୍ଣୁ ଏବଂ ବିଷ୍ଣୁତୀର୍ଥ ସମାନ ହିଁ କାର୍ତ୍ତିକ ମାସ ମଧ୍ୟ ଶ୍ରେଷ୍ଠ ଓ ଦୁର୍ଲଭ ଏହି କଳି ଯୁଗରେ । ତେଣୁ କଳି ଯୁଗରେ କାର୍ତ୍ତିକ ସ୍ନାନ ଓ ବ୍ରତକୁ ମୋକ୍ଷ ପ୍ରାପ୍ତିର ମାର୍ଗ ବୋଲି ଦର୍ଶାଯାଇଛି ।

ପୁରାଣମାନଙ୍କ ମତାନୁସାରେ ଏହି ମାସଟିକୁ ଚାରି ପୁରୁଷାର୍ଥ, ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାୟକ ବୋଲି ଗ୍ରହଣ କରାଯାଇଛି । ସ୍ୱୟଂ ନାରାୟଣ ବ୍ରହ୍ମାଙ୍କୁ, ବ୍ରହ୍ମା ନାରଦଙ୍କୁ ଏବଂ ନାରଦ ମହାରାଜ ପୃଥୁଙ୍କୁ କାର୍ତ୍ତିକ ମାସ ସର୍ବ ଗୁଣ ସମ୍ପର୍ଣ୍ଣ ହେବା ବିଷୟ ଓ ଏହାର ମାହାତ୍ମ୍ୟ ଜଣାଇଛନ୍ତି । ଏହି ମାସରେ ବ୍ରତ କରୁଥିବା ନାରୀମାନେ ଅକ୍ଷୟ ନବମୀ ବା ଅଁଳା ନବମୀ ଦିନ ଅଁଳା ବୃକ୍ଷତଳେ ବସି ଭଗବାନ କାର୍ତ୍ତିକେୟଙ୍କ କଥା ଶୁଣନ୍ତି । ତଦୋପରାନ୍ତ ବ୍ରାହ୍ମଣଙ୍କୁ ଅନ୍ନ-ଧନ ଦାନ କରିବା ସହିତ ଗୁପ୍ତଦାନ ମଧ୍ୟ ଦିଆଯାଏ । ଏଥି ସହିତ କୁମାର, କୁମାରୀ ଓ ବ୍ରାହ୍ମଣଙ୍କୁ ଅଁଳା ଗଛ ତଳେ ବିଧିବିଧ ଭୋଜନ କରାଇବାର ପ୍ରଥା ମଧ୍ୟ ରହିଛି । ସେମିତି ବି ସମ୍ପୂର୍ଣ୍ଣ କାର୍ତ୍ତିକ ମାସସାରା ଦାନପୂଣ୍ୟ କରିବାର ବିଧାନ ପ୍ରଚଳିତ ।

ଏହି ମାସ ସାରା ଦୀପଦାନର ବିଧି ମଧ୍ୟ ରହିଛି । ଆକାଶଦୀପ ମଧ୍ୟ ପ୍ରଜ୍ୱଳିତ କରାଯାଏ । ଏହା କାର୍ତ୍ତିକ ମାସର ପ୍ରଧାନ କୃତ୍ୟ ଅଟେ, କାର୍ତ୍ତିକ ମାସର ଦ୍ୱିତୀୟ ପ୍ରମୁଖ କୃତ୍ୟ ହେଉଛି ତୁଳସୀ ବ୍ରତ ପାଳନ । ଏମିତି ବି ବର୍ଷ ସାରା ତୁଳସୀ ସେବା କଲ୍ୟାଣକାରୀ ବୋଲି ମାନ୍ୟତା ରହିଛି, କିନ୍ତୁ କାର୍ତ୍ତିକରେ ତୁଳସୀ ଆରାଧନାର ବିଶେଷ ମହିମା ରହିଛି ।

ବିଷ୍ଣୁ ନାମ ସଂକୀର୍ତ୍ତନ ମଧ୍ୟ ଏହି ମାସର ପ୍ରମୁଖ କୃତ୍ୟ ମାନଙ୍କ ମଧ୍ୟରେ ଅନ୍ୟତମ । ନାମ ସଂକୀର୍ତ୍ତନ ଦ୍ୱାରା ବାଣୀକୁ ଶୁଦ୍ଧତା ମିଳେ । କଳିଯୁଗରେ ଏହାର ମହତ୍ୱ ଅଧିକ- 'କଲୌ ହରିକର୍ତନାତ,' କଥା ଶ୍ରବଣ ଦ୍ୱାରା ପାପ ନାଶ ହୁଏ, ବୁଦ୍ଧି ସଦାଚାରୀ ହୁଏ । ବ୍ରତଧାରୀ ମାନେ ଗୀତା, ଶ୍ରୀମଦ ଭାଗବତ ଓ ଶ୍ରୀ ରାମ ଚରିତ ମାନସ ଶ୍ରବଣ କରିବା ଶ୍ରେୟସ୍କର । ଏଥି ସହିତ ବ୍ରତ ପାଳନର ସାର୍ଥକତା ପାଇଁ ଗୋଦାନ, ବିଷ୍ଣୁ ପୂଜନ, ସତ୍ୟ, ଅହିଂସା ଓ ସଦାଚାର ଧର୍ମ ପାଳନ ମଧ୍ୟ ଆବଶ୍ୟକ ।

ବ୍ରତୀ ଜଣକ ଗଙ୍ଗା, ବିଷ୍ଣୁ, ଶିବ ତଥା ସୂର୍ଯ୍ୟ ଦେବଙ୍କୁ ସ୍ମରଣ କରି ଜଳରେ ପ୍ରବେଶ କରିବା ଉଚିତ ଏବଂ ନାଭି ପର୍ଯ୍ୟନ୍ତ ଜଳରେ ଠିଆହୋଇ ବିଧି ପୂର୍ବକ ସ୍ନାନ

କରିବା ବିଧେୟ ।

କାର୍ତ୍ତିକ ମାସରେ ପିତୃପୁରୁଷଙ୍କୁ ତର୍ପଣ କରିବା ଦ୍ୱାରା ସେମାନଙ୍କୁ ଅକ୍ଷୟ ତୃପ୍ତୀ ପ୍ରାପ୍ତହୁଏ । ତର୍ପଣ ପରେ ଜଳରୁ ବାହାରି ଶୁଦ୍ଧବସ୍ତ୍ର ପରିଧାନ କରି ବ୍ରତୀ ଭଗବାନ ବିଷ୍ଣୁଙ୍କୁ ପୂଜାର୍ଚ୍ଚନା କରିବା ଉଚିତ । ବ୍ରତୀ ମାନଙ୍କ ଲାଗି ଲାଉ, ଗାଜର, କଇଥ, ବାଇଗଣ ଆଦିପରିବା ଏବଂ ବାସି, ଦୂଷିତ ଏବଂ ଅନ୍ୟ ଘରୁ ଆସିଥିବା ଅନ୍ନ ଭକ୍ଷଣକୁ ନିଷିଦ୍ଧ କରାଯାଇଛି ।

କାର୍ତ୍ତିକ ବ୍ରତ କରୁଥିବା ମାନବକୁ ଦେଖି ଯମଦୂତ ଏମିତି ପଳାୟନ କରନ୍ତି ଯେମିତି ସିଂହ ପାଖରୁ ପୀଡ଼ିତ ହାତୀ ପଳାୟନ କରେ । ଏହି ଭୂତଳପରେ ଭୁକ୍ତି ଓ ମୁକ୍ତି ପ୍ରଦାୟକ ଯେତେ ତୀର୍ଥ ଅଛି, ସେ ସମସ୍ତ କାର୍ତ୍ତିକ ବ୍ରତୀ ଠାରେ ନିବାସ କରନ୍ତି ।

କଟକ
ଇମେଲ୍ - prativa.priya@gmail.com





# ପାଠୁଆ ବାୟା



ଶୁଭବ୍ରତ ରଥ



ତା ନାଁ ପଞ୍ଚୁ। ତା ବୟସ କେତେ ଠିକରେ ଜାଣିନ, ଜାଣିବାର ପ୍ରୟାସ ବି କରିନି । ଆମ ଗାଁ ମନ୍ଦିର ପାଖରେ ଯୋଉ ଖାଲି ପଡ଼ିଆ ଅଛି, ପ୍ରାୟତଃ ସେଇଠି ମିଳେ। ପଡ଼ିଆରେ ଗୋଟେ ବରଗଛ ଆଉ ତାହାରି ଛାଇରେ ବିତିଯାଏ ପଞ୍ଚୁର ସମୟ। ଇଂରାଜୀରେ ଫିସଫିସ୍ କରି ଭିକ ମାଗେ। ମଝିରେ ମଝିରେ ଗୀତ ଗାଏ। କେବେ ଭଜନ, କେବେ ଗଜଲ୍, ଆଉ ମନ ଖୁସି ଥିଲେ ରବିନ୍ଦ୍ର ସଂଗୀତ୍ ବି ଖଣ୍ଡେଇ ଖଣ୍ଡେଇ ଗାଏ ସିଏ। ମୋ ବୟସର ଲୋକଙ୍କୁ ଭାରି ଭଲ ପାଏ। ପାଖକୁ ଡାକେ ଆଉ କିଛି କହିବାକୁ ଚେଷ୍ଟା କରେ। ମୁଁ କେବେ ଶୁଣିନି, ଅବଶ୍ୟ। କଥା ହେବା ପାଇଁ ସିଏ ବହୁବାର ପ୍ରୟାସ୍ କରିଛି। ସିଏ କୁଆଡ଼େ ତା ସମୟରେ ମେଧାବୀ ଛାତ୍ର ଥିଲା ଆଉ ବିଦେଶରେ ଚାକିରୀ ବି କରିଥିଲା। ତା ଘର କୋଉଠି କେହି ସଠିକ୍ ଭାବେ ଜାଣି ନାହାନ୍ତି। ଗାଁ ଲୋକ କୁହନ୍ତି, ପଞ୍ଚୁ ଏମିତି ସେମିତି ବାୟା ନୁହେଁ, ସେ ପାଠୁଆବାୟା ।

ମୋତେ ଗାଁରେ ସମସ୍ତେ ଜୁଲୁ ବୋଲି ଡାକନ୍ତି। ବାହା ହେବାର ଆଠ ବର୍ଷ ବିତିଗଲାଣି। ମୋ ଚାକିରୀ ପୁନେରେ। ପିଲାଛୁଆ କିନ୍ତୁ ଗାଁରେ ରୁହନ୍ତି। ବର୍ଷରେ ଦୁଇଥର ମୁଁ ଗାଁକୁ ଆସେ। ଦଶହରା ଆଉ

ପଣାସଂକ୍ରାନ୍ତି। ଗତକାଲି ପହଞ୍ଚିଛି। ଭାବୁଛି ଚାକିରୀ ଛାଡ଼ି ନିଜ ବ୍ୟବସାୟ ଆରମ୍ଭ କରିବି । ଏଇ ଇଚ୍ଛାଟା କିଛି ନୂଆ ନୁହେଁ। କିନ୍ତୁ ପଇସା ଖଟେଇବାର ଡର। ଆମ ପରିବାରରେ କେହି କେବେ ବ୍ୟବସାୟ କରିନାହାନ୍ତି, ଏଇ ଲାଇନରେ ଜ୍ଞାନ କମ, ଏମିତ ବି ନୁହେଁ କି ବାପା ଅଜା ଥୋକେ ସମ୍ପତ୍ତି ଥୋଇ ଯାଇଛନ୍ତି। କୁଟିଖିଆ କାଟିପିନ୍ଧା ଅବସ୍ଥା। କାଲି ବସରୁ ଓହ୍ଲେଇ ଘରକୁ ଆସିଲି ବେଳେ, ମୁଁ ଅନ୍ୟମନସ୍କ ଥିଲି । ହଠାତ୍ ଲାଗିଲା କିଏ ଜଣେ କାନ ପାଖରେ କିଛି କହୁଛି। ଚମକି କି ପଛକୁ ଦେଖେତ, ପାଠୁଆବାୟା ଦାନ୍ତ ଦେଖେଇକି ଚାହୁଁଛି। ଆଉ ସିଏ ଯାହା କହିଲା, ତା ଶୁଣିବା ପରି ଠୁଁ ମୋ ମୁଣ୍ଡ ଖରାପ ହୋଇସାରିଛି ।

ତୃତୀୟ ଶ୍ରେଣୀରେ ଯେବେ ମୁଁ ଗୋଟେ ଜିଲ୍ଲାସ୍ତରର ପରୀକ୍ଷାପାଇଁ ପ୍ରସ୍ତୁତ ହେଉଥିଲି, ମୋ ସ୍କୁଲର ପ୍ରଧାନ ଶିକ୍ଷକ କହିଲେ, “ପୁଅ, ଯଦି ତୁ ଜିତିଯାଉ, ତୋତେ ରସଗୋଲା ଖୁଏଇବି ।” ଯୋଉଦିନ ଫଳ ବାହାରିଲା, ସନ୍ଧ୍ୟାବେଳେ ସାର୍ ପହଞ୍ଚିଗଲେ। ହାତରେ ଥିଲା ଗରମ୍‌ସିଙ୍ଗଡ଼ା ଆଉ ରସଗୋଲାର ଗୋଟେ ହାଣ୍ଡି। ମୋତେ ଲାଗିଲା ଯେମିତି ମୋ ଶ୍ରମ ସାର୍ଥକ ହେଲା। ମୁଁ ସେଦିନ ଭାରି ଖୁସିଥିଲି ଆଉ ମୋ ମନ ମଧ୍ୟରେ ଗୋଟେ ଧାରଣା କ୍ରମଶଃ ବସା ବାନ୍ଧିବାକୁ ଲାଗିଲା ଯେ, ମଣିଷକୁ ତା କାମର ପାରିଶ୍ରମିକ ହିଁ ଖୁସିଦିଏ। ବୋଉ କହିଲା, ତୁ ଯଦି ଦଶମଶ୍ରେଣୀରେ ଭଲ ନମ୍ବର ରଖିବୁ, ତୋତେ ଭୁବନେଶ୍ୱର ବୁଲେଇ ନେବି। ନନା କହିଲେ, ଯଦି ପ୍ରବେଶିକା (entrance) ପରୀକ୍ଷା ପାସ୍ କରିବୁ, ତୋତେ ବାଇକ୍ ମିଳିବ। ମୋ ଭଳି ଛାତ୍ର ପାଇଁ ଏଗୁଡ଼ାକ କରିବା କୌଣସି କାଠିକର ପାଠ ତ ନଥିଲା। ମିଠା ରସଗୋଲା ଖାଇବାର ଆଦତ୍ ହେଇ ସାରିଥିଲା। କିନ୍ତୁ ଶିରା ମହଙ୍ଗା ପଡ଼ିଲା। ଛାତ୍ର ଜୀବନ ଖାଲି ପାଠପଢ଼ାରେ ବିତିଲା। ଚୂର୍ଣ୍ଣ ହେଇଗଲା ବାକି ସବୁ ଇଚ୍ଛା। ସାଙ୍ଗସାଥୀମାନଙ୍କ ପାଖରେ ଗୋଟେ ପୁସ୍ତକକୀଟ ହେବାର ମୋହର ଲାଗିଲା। ଶୁଣିଛି ଶିରା ଧୋଇବା ଭାରିକଷ୍ଟ ! !

ଯୋଉ ଦିନଠାରୁ ବାହାହେଇଛି, ଜୀବନର ବାକିସବୁ ଅଭିଜ୍ଞତା ବୃଥା ମନେହେଉଛି। ହଜାରେ ସମ୍ପର୍କ , ଦୁଇ ହଜାର ନିୟମ, ତିନି ହଜାର ଆୟୋଜନ। ସେଥିରେ ସମୟବଞ୍ଚେଇ, ପଇସା ବଞ୍ଚେଇ, ଆଗକୁ ବଢ଼ିବାର ଲକ୍ଷ୍ୟ ଏତେ ସହଜ ନୁହେଁ। କିନ୍ତୁ ରସଗୋଲାର ଅଭ୍ୟାସ ଏତେ ପୁରୁଣା ଯେ, ବର୍ଷପରେ ବର୍ଷ ଯେନତେଣ ପ୍ରକାରେଣ, ସ୍ତ୍ରୀକୁ ବୁଝେଇ ପାରିବାର କୌଶଳ ମୁଁ ଆୟତ୍ତ କରିଛି। ଏଥର ତାକୁ କହିଛି, ତୁମେ ଚିନ୍ତା କରନି, ଗେଜ୍ ଆଉ ଦୁଇ ଘଣ୍ଟା ଡେରିରେ ଆସିବି। ବସ୍ ଖୁସିହେଇ ପ୍ରମୋସନ୍ ଦେବ ଆଉ ତା ପରେ ତୁମକୁ ସମୟ ହିଁ ସମୟ ଦେବି। ବିଦେଶ ବୁଲେଇ ନେବି, ପଞ୍ଚତାରକା ହୋଟେଲରେ ଖୁଏଇବି। ପୁଅର ଆନୁଆଲ୍ ଡେ’ରେ ଆସିପାରିବିନି ଅଫିସ୍ କାମ

ଅଛି। ଏସବୁ ତୁମ ମାନଙ୍କପାଇଁ ହିଁ କରୁଛି। ସ୍ତ୍ରୀ ହସି କହିଲା, ତୁମେ ଆଉ ତୁମ ରସଗୋଲା। ବାକି ସବୁ ଭେଳକିବାଜି । ଫିବେଇ ହୁଅନି ।

କାଲି ପାଠୁଆବାପ୍ଝା କହିଲା, "ବାପା, ଗୋଟେ ପାଞ୍ଚଟଙ୍କିଆ

ରସଗୋଲା ଖାଇବୁ ବୋଲି କେତେ ଦୁଇଟଙ୍କିଆ ରସଗୋଲା ଫିଙ୍ଗିଦେଲୁଣି ? ସ୍ୱାଦ ବି ସମାନ, ଆଉ ଖୁସିବି। ମିସେଇକି ଖା। ଖାଇବାର ସ୍ୱାଦ, ବନେଇବା ଲୋକର ହାତରେ, ବନେଇବାର ପ୍ରକ୍ରିୟାରେ, ନ ହେଲେ ଗ୍ରାହକ ଗୃହୀ ଗୁଲିଯିବେ। କେବେ ଆଉ ଫେରିବେନି । ମୋତେ ଏ ଗାଁରେ ଖାଇବା, ରହିବା ପାଇଁ ସବୁ ମିଳିଗଲା, ତୋତେ ମିଳିବ ବୋଲି ପକ୍କା ଅଛି କି ?"

ତୈଫ୍, ସାଉଦୀ ଆରବ

ଇମେଲ୍ - shubhabrata.rath@gmail.com

ଫୋନ୍ - +୯୬୬-୫୩୩୨୫୪୮୬୨

# ଦର୍ପଣର ମୋକ୍ଷ



ନିକୁଞ୍ଜ କିଶୋର ସେଠୀ

କାନ୍ଥକୁ ଧରିଥିଲା ସିଲ୍‌ଭିଆ ଦର୍ପଣ ।
କହୁଥିଲା ଜୀବନର ଅନେକ ମୁହୂର୍ତ୍ତ;
ଗାଉଥିଲା ଗାଥା ।
ଜନ୍ମରୁ ଏଣ୍ଟିଡ଼ିଶାଳଠୁ ମଧୁରାତ୍ରୀ;
ଆଉ ତା ଠାରୁ ଲମ୍ବିଥିବା କୋକେଇ ପର୍ଯ୍ୟନ୍ତ
ଅନେକ କବିତା ।
ସବୁଥିରେ ଲେଖାଥିଲା ଜୀବନ୍ତ କାହାଣୀ ।
ସମଦୂରେ ଉଦ୍‌ଭାସିତ ବାସ୍ତବ ନିଛକ ସତ,
କେତେ ପୁଣି ବଦଳିଗଲାଣି !
ସମୟ ସାଥିରେ ଗ୍ରିଲଯାଏ ପ୍ରତିଛବି,
ଗଲେ ତମେ ଦୂରରୁ ଦୂରକୁ;
ସମବେଗେ ନ ଥାଏ ତା ସମ ଲେଉଟାଣି
ସବୁ ସତ କହି କହି, ବୟସର ସାଥେ,
ମୁହଁରେ ତା ଆସିଲାଣି ବିଷର୍ଣ୍ଣତା ଚିହ୍ନ;
ଲୋଚିତ କଟାକ୍ଷ ।
ତୁମ ସାଥେ ହସିକାନ୍ଦି ଖେଳକୁଦି
ତା'ର ବି ଯାଇଛି ଗଡ଼ି ଦିନ, ମାସ ବର୍ଷ
ହେଲେ ନାହିଁ ତା'ର ମୋକ୍ଷ !!!

ଅଧ୍ୟାପକ, ଅର୍ଥନୀତି ବିଭାଗ
ସରକାରୀ ମହାବିଦ୍ୟାଳୟ, ସୁନ୍ଦରଗଡ଼

# ଚିନ୍ତାର ବିଷୟ !!!



ଦୁର୍ଗା ପ୍ରସାଦ ପଟ୍ଟନାୟକ

ସ୍କୁଲରେ ବିଜ୍ଞାନ ଶ୍ରେଣୀରେ ଶିକ୍ଷକ ପ୍ରଶ୍ନକଲେ;
କହିଲ ପିଲେ ସୂର୍ଯ୍ୟବଡ଼ କି ପୃଥିବୀ ବଡ଼ ?
ନିଲୁ : ଆଜ୍ଞା, ସୂର୍ଯ୍ୟ ବଡ଼ ।
କୁନୁ : ଚୁପ୍ ବେ ନିମକ୍‌ହାରମ୍ କୋଉଠିକାର । କହିଲା ସୂର୍ଯ୍ୟ ବଡ଼ ! ଆବେ ଯାହାର ଖାଉଛୁ ତାକୁ ଛୋଟ୍ କହୁଛୁ ?
ଶିକ୍ଷକ : ଏଇଁ, ସୂର୍ଯ୍ୟ ନାହିଁ ପୃଥିବୀ ବଡ଼ !!! କେମିତି ?
କୁନୁ : ଦେଖନ୍ତୁ ସାର୍, ଆମେ ପୃଥିବୀଠାରୁ ଖାଦ୍ୟ, ବସ୍ତ୍ର ଆଉ ବାସଗୃହ ପାଉଛୁ । ମଣିଷ ବଞ୍ଚିବାପାଇଁ ଏଇ ତିନିଟା ଜିନିଷ ନିହାତି ଦରକାର । ତେଣୁ ପୃଥିବୀ ବଡ଼ ।

X X X X X

ଗୋଟିଏ ସ୍ତ୍ରୀ ଲୋକ ପ୍ରତିଦିନ ଭଗବାନ ଶିବଙ୍କୁ ପୂଜା କରୁଥିଲା ।
ଦିନେ ଭଗବାନ ସନ୍ତୁଷ୍ଟ ହୋଇ ପ୍ରକଟ ହେଲେ ।
ଭଗବାନ - ମୁଁ ତୁମ ପୂଜାରେ ସନ୍ତୁଷ୍ଟ । ତୁମେ ଯେଉଁ ବର ମାଗିବ ମୁଁ ଦେବି । କୁହ ତୁମକୁ କି ବର ଦେବି ?
ସ୍ତ୍ରୀ ଲୋକ - (ଟିକେ ମନ ଦୁଃଖରେ) ମୋର ବର ଦରକାର ନାହିଁ ପ୍ରଭୁ ।
ଭଗବାନ - ଆଶ୍ଚର୍ଯ୍ୟ । ଦରକାର ନାହିଁ? ତା ହେଲେ ପୂଜା କାହିଁକି କରୁଥିଲ ?
ସ୍ତ୍ରୀ ଲୋକ - ବିବାହ କରିଥିବା ଜଣେ ବର ମୋ ଜୀବନକୁ ନର୍କ କରିଦେଲାଣି ପ୍ରଭୁ । ନିତି ମଦପିଇ ମୋତେ ମାରୁଛି ପିଟୁଛି । ଆଉ ଗୋଟେ ବର ଦେଲେ ମୋ ଅବସ୍ଥା କଣ ହେବ ???

କୁଚିଣ୍ଡା, ଗମଜପଡ଼ା
ସମ୍ବଲପୁର
ମୋବାଇଲ୍ : ୯୫୮୩୩୨୨୧୪୩



# ବୁଢ଼ୀ ମାଉସୀ



ଲକ୍ଷ୍ମୀକାନ୍ତ ନାୟକ



ଟପ୍ ଟପ୍ ବର୍ଷା ଟୋପାର ମାଡ଼ରେ ଗାଡ଼ିର ବେଗ ବଢ଼ି ଗ୍ଲଥାଏ । କଳାବାଦଲର ତୁଣ୍ଡଫଟା ଗର୍ଜନରେ ସମଗ୍ର ଅଞ୍ଚଳ ଥରଥର ହେଉଥାଏ । ମୋର ଗାଡ଼ିର ବେଗ ବଢ଼ି ଗ୍ଲଥାଏ । ଠିକ୍ ଏତକ ବେଳକୁ ମୋର ଗାଡ଼ିଟି ଯାଇ ପହଞ୍ଚିଲ୍ ଏକ ଦୋକାନ ପାଖରେ । ବର୍ଷାରୁ ରକ୍ଷାପାଇବା ପାଇଁ ଅନେକେ ସେଇ ଦୋକାନର ଛାଇରେ ଥାଆନ୍ତି । ମୁଁ ବ ସେଇଠି ଯାଇ ଠିଆହୋଇଗଲ ।

କିଛି ସମୟ ବର୍ଷାର ପ୍ରକୋପ ସରିବାପରେ ସମସ୍ତେ ନିଜ ନିଜ କାମରେ ଲ୍ଗିଗଲେ । ଏତକ ବେଳକୁ ମୋର ନଜର ପଡ଼ିଲ୍ ଦୂରରେ ଥିଲ୍ ଗୋଟିଏ ଭଙ୍ଗାରୁଜା ଦୋକାନ ଉପରେ । ବର୍ଷାର ପ୍ରକୋପରୁ ସେହି ଦୋକାନଟି ମଧ ରକ୍ଷା ପାଇନଥିଲ୍ । ଯାହା ଭିତରେ ଥିଲ୍ ବୁଢ଼ୀ ମାଉସୀଟି ଉପରକୁ । ବୟସ ପାଖାପାଖି ୭୦ ହେବଣି । କିଛି ସମୟର ମୂଲଚ୍ଲ ପରେ ମୁଁ କିଛି ଆଳୁ ଆଉ ପିଆଜ କିଣିଲ । ବର୍ଷାର ଭୟ ଥିବାରୁ ମୁଁ ଭରି ତରତର ହେଉଥାଏ । ସବୁ ଜିନିଷ କିଣିସାରିବା ପରେ ତା'ର ମୂଲ୍ୟ ବାବଦକୁ ଟଙ୍କା ଦେଇଦେଲି ।

ପୁଣିଥରେ ବର୍ଷାର ଦାଉ ବଢ଼ିଲ୍ । ବାଧ ହୋଇ ସେଇ ଭଙ୍ଗା ଦୋକାନ ପାଖରେ ଠିଆହୋଇ ରହିବାକୁ ପଡ଼ିଲ୍ । ଦୋକାନରେ ବସିଥିବା ବୁଢ଼ୀ ମାଉସୀଙ୍କୁ ଦେଖି ମନେ ମନେ ଉଙ୍କିଥିବା ପ୍ରଶ୍ନ ମୋ ତୁଣ୍ଡରେ ଆସିଗଲ୍,







"କଣ ମାଉସୀ ତୁମର କେହି ନାହାନ୍ତି ?" ସେ କିଛି ସମୟ ନିରବରେ ମୋତେ ଚାହିଁବା ପରେ କହିଲା, 'ହଁ ବାବୁ । ସବୁକିଛି ଥିଲା । ଆଜି କିନ୍ତୁ କେହି ନାହାନ୍ତି । ପେଟ ପୋଷିବାପାଇଁ ଏଇ ଝୁଡ଼ିଆ ଦୋକାନଟେ କରିଛି । ଆଳୁ ୫ କେଜି, ପିଆଜ, ଲଙ୍କା, ରସୁଣ୍ ... । ପରିବାର କହିଲେ ମୋର ଏଇ ଏକା ପରିବାର । ଏହି ଭଙ୍ଗାଦୋକାନ ଭରସାରେ ବଞ୍ଚିଛି । ଦଶ ବର୍ଷ ହେଲା ମଉସା ଚାଲିଗଲେଣି । ଘରେ ତିନିଟା ପିଲାକୁ ଧରି ମୁଁ ଏକା ଘର ଚଳାଉଥିଲି ବାବୁ, ହେଲେ ଦଇବ ସହିଲାନି । କଣ ବେମାରୀ ହେଲା କେଜାଣି ମୋର ତିନିଟା ପିଲା ଗୋଟେ ପରେ ଗୋଟେ ସବୁ ଚାଲିଗଲେ । ମୁଁ ଏକା କାହିଁକି ବଞ୍ଚିଲି ମୁଁ ଜାଣିପାରୁନି । ଏବେ ମୁଁ ଏକା ବାବୁ । ସବୁ ମୋତେ ଏକା କରି ଚାଲିଗଲେ ।

ଦୂରରେ ମେଘ ଆଢୁଆଳରେ ସୂର୍ଯ୍ୟ ମୁଣ୍ଡ ଟେକୁଥିଲା, ମେଘ ବି କମି ଆସିଥିଲା । ପୁଣିଥରେ ବର୍ଷାର ସମ୍ଭାବନାକୁ ଦେଖି ମୁଁ ମଧ୍ୟ ସେଇ ବୁଢ଼ୀକୁ ଏକା କରି ଚାଲି ଆସୁଥିଲି ।

ସିଭିଲ୍ - ମେଣ୍ଟେନାନ୍ସ୍
ବେଦାନ୍ତ ଲିମିଟେଡ୍ (ଷ୍ଟେର୍‌ଲାଇଟ୍ ଗ୍ରୁପ୍)
ଲାଞ୍ଜିଗଡ଼, କଳାହାଣ୍ଡି
ମୋବାଇଲ୍ - ୯୭୭୭୪୫୭୨୧୭

# ବର୍ଷା ଓ ବାଦଲ




ଅନୁପମ ବେହେରା


ସାଥୀହରା ହୋଇ ଏକା ଏକା ଘୂରବୁଲୁଥିବାବେଳେ ଦିନେ ବାଦଲ୍‌ର ଦେଖା ହୁଏ ବର୍ଷା ସାଥୀରେ । ବର୍ଷା ଆଖିରେ ଲୁହ ଦେଖି ସେ ଜାଣିବାକୁ ଚାହେଁ ତା' ଲୁହର କାହାଣୀ । ବର୍ଷା ବି ନିର୍ଦ୍ୱନ୍ଦରେ କହିଦିଏ ନିଜ ଦୁଃଖଭରା ଅତୀତକୁ ବାଦଲ୍ ଆଗରେ । ବାଦଲ୍‌ର ହୃଦୟ ତରଳିଯାଏ ବର୍ଷାର କାହାଣୀ ଶୁଣି । ବର୍ଷା ନିଜ କୋହ ସମ୍ଭାଳି ନ ପାରି ମଥା ରଖେ ବାଦଲର ଛାତିରେ । ବାଦଲ୍ ଆଶ୍ୱାସନା ଦିଏ ତା' ମଥା ଉପରେ ହାତ ରଖି । ବର୍ଷାକୁ ବୋଧେ ନିରାପଦ ଲାଗେ ବାଦଲର ଛାତିଟା । ସେ ଜାବୁଡି ଧରେ ବାଦଲକୁ । ବାଦଲ୍ ବି ଜାବୁଡିଧରେ ବର୍ଷାକୁ ।

- "ବାଦଲ୍ । ତୁମେ ମୋତେ କେବେ ନିଜଠୁ ଦୂରେଇଦେବନି ତ ?"
- "ନା କେବେ ନୁହେଁ ।" ବାଦଲ ବର୍ଷାର ଲୁହ ପୋଛି ପୋଛି କହେ । "ଆଉ ତମେ ?"
  ବର୍ଷା କିଛି ନ କହି ଚୁପ୍ ରହେ ।
- "କିଛି କହିଲନି ଯେ ?" ବାଦଲ୍ ଆଉଥରେ ପଚାରେ ।
- "ଜାଣିନି ।" ଉଦାସ ଦିଶେ ବର୍ଷାର ଚେହେରା ।

ବାଦଲ ଆଉ ଅଧିକା କିଛି ପଚାରେନି ବର୍ଷାକୁ ତା' ଶୁଖିଲା ମୁଁହଟାକୁ ଦେଖି ।





ଏମିତି ସମୟ ଗଡିଚାଲେ । ହସି ଖେଳି ସମୟ ବିତିଯାଉଥାଏ ଦୁହିଁଙ୍କର । ଶରତ, ହେମନ୍ତ, ଶୀତ ଯାଇ ଋତୁରାଜ ବସନ୍ତଙ୍କର ଧରାପୃଷ୍ଠରେ ଆଗମନ ହୁଏ । ଆମ୍ବ ବଉଳର ବାସ୍ନାରେ ମହକିଯାଏ ଚତୁର୍ଦ୍ଦିଗ । କୋଇଲିର କୁହୁତାନ ଶୁଣି ମନ ଅସ୍ଥିର ହୁଏ ବର୍ଷାର ।

– ମୁଁ କୋଇଲି ଦେଖିବି ।

– ସେଥିପାଇଁ ତ ତୁମକୁ... ନା ବର୍ଷା ମୁଁ ତୁମକୁ ଛାଡିପାରିବିନି ।" ବାଦଲ ପ୍ରତିବାଦ କରେ ।

ବାଦଲ୍ ତା'କୁ ନେଇ ଚାଲିଯାଏ ଦୂର କେଉଁ ରାଇଜକୁ । ଯେଉଁଠି ନା ଥାଏ କୋଇଲି ନା ଆମ୍ବ ବଉଳର ବାସ୍ନା । ଥାଆନ୍ତି ତ ଖାଲି ବାଦଲ୍ ଓ ବର୍ଷା । ଦୁହେଁ ସାଥିହୋଇ ବହୁତ ମଜାକରନ୍ତି ସେଠି । ସମୟ ଗଡିଚାଲେ । ଶେଷରେ ଦୁହେଁ ଫେରନ୍ତି ସେଇ ପୁରୁଣା ଜାଗାକୁ ଯେଉଁଠି ଦେଖାହୋଇଥିଲି ଦୁହିଁଙ୍କର । ବହୁତ ଖୁସି ଥାଏ ବାଦଲ୍ ବର୍ଷା ଭଳି ସାଥୀଟିଏ ପାଇ । କିନ୍ତୁ ବର୍ଷା ଖୁସୀ ନ ଥାଏ ।

ଇତି ମଧ୍ୟରେ ବର୍ଷାଦିନ ଆସିଯାଇଥାଏ । ମୌସୁମୀର ଆଗମନ ହୋଇସାରିଥାଏ । ବର୍ଷା ଆହୁରି ଆହୁରି ଶୁଖିଲା ଦିଶୁଥାଏ । ବାଦଲ୍ ଆହୁରି ଆହୁରି ଉତ୍‌ଫୁଲିତ ଦେଖାଯାଉଥାଏ ।

ହଠାତ୍ ଦିନେ ସୁନାମୀ ଆସେ ବାଦଲ୍ ଜୀବନରେ...

– "କୁଆଡେ ଯାଉଛ ବର୍ଷା ?"

– "ମୋତେ ଯିବାକୁ ହେବ..."

– "କିନ୍ତୁ କୁଆଡେ ?"

– ତୁମର ସବୁ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ବାଧ୍ୟ ନୁହେଁ, ବାଦଲ୍ ।

ବାଦଲ୍ ଚୁପ୍ ହେଇଯାଏ । ତା'କୁ ବିଶ୍ୱାସ ହୁଏନା ।

– ଇଏ କ'ଣ ସେଇ ବର୍ଷା ? ସେ ନିଜକୁ ନିଜେ ପ୍ରଶ୍ନ କରେ ।

– ମୋ ଠୁ ଆହୁରି ଭଲ ସାଥୀ ତୁମକୁ ମିଳିଯିବ ବାଦଲ୍ ।" କହି କୁଣ୍ଠେଇଧରେ ସେ ବାଦଲକୁ ।

କିନ୍ତୁ ବାଦଲ ସେମିତି ଠିଆହୋଇଥାଏ ନିର୍ବିକାର ଭାବରେ ।

ବର୍ଷା ଚାଲିଯାଏ ମୌସୁମୀ ସାଥୀରେ । ଏକା ରହିଯାଏ ବାଦଲ୍ । ଆଗଭଳି । ବହୁତ ଏକାକୀ ଅନୁଭବ କରେ ସେ । ଚାପିରଖିପାରେନା ନିଜ ଅନ୍ତରର ଦୁଃଖକୁ । ଚିତ୍କାର କରେ ସେ ବହୁତ ଜୋରରେ । ବାଦଲ୍‌ର ଚିତ୍କାର ଶୁଣିପାରେ ବର୍ଷା । କିନ୍ତୁ ପଛକୁ ଫେରି ଯାଇପାରେନା ବାଦଲ୍ ପାଖକୁ । ଟପ୍ ଟପ୍ ହୋଇ ଲୁହ ଗଡିପଡେ ତା' ଆଖିରୁ । ବର୍ଷାର ଲୁହରେ ଓଦା ହେଇଯାଏ ସାରା ପୃଥିବୀ ।

ଇମେଲ୍ - anupam.piet.chandan@gmail.com

# ଶୀତ ଋତୁ




କମଳକାନ୍ତ ସୁବୁଦ୍ଧି


ଶରତ ଶେଷରେ ଆସିଥାଏ ଶୀତ
ଶୀତ ସ୍ୱାଗତ କରିବା
ଶୀତର ଲହରୀ ନବଗୁଞ୍ଜରଣ
ଉଙ୍କିମାରି ତା ଦେଖିବା ।୧ ।
ଶୀତ ଯଦି ହୁଏ ଋତୁମଧ୍ୟେ ରଜା
ମୁଁ ତୋର ମନର ରଜା,
ଶୀତ ସକାଳର କୁହୁଳା ଉଆସ
ଶିଶିର ବନ୍ଧୁକୁ ପ୍ରଜା ।୨ ।
ଶୀତ ସକାଳର ସୁନେଲୀ କିରଣ
ଦିଶେ କେଡ଼େ ମନଲୋଭା
ସେଠିମିଶି ଦୁହେଁ ମଉଜ କରିବା
ଦେଖି ବଉଳର ଶୋଭା ।୩ ।
ଶୀତର ସନ୍ଧ୍ୟାରେ ଜହ୍ନ ଆଲୋକରେ
ଝଲକେ ଗଙ୍ଗଶିଉଳୀ
ଶୋଭା ବାଡ଼ିଦାଣ୍ଡେ ଗେଣ୍ଡୁ ଓ ମାଳତୀ
ଖୁଭେ ଝଡ଼ଇ ଶେଫାଳୀ ।୪ ।
ଶୀତେ ଲାଜ ଲାଜ କାଳୁଆ ଦେହକୁ
କୁତୁ କୁତୁ କିଛି ହେବା
ଶୀତ ଚାଲିଯିବ ମିତ ରହିଯିବ
ସ୍ମୃତି ଯାହା ଭାବୁଥିବା ।୫ ।


ନଇରୀ, ଖୋର୍ଦ୍ଧା, ଓଡ଼ିଶା

# ଏଡ୍‌ସ ବାବା



ଡା ସୌମ୍ୟରଞ୍ଜନ ମିଶ୍ର

କିଛିଦିନ ତଳେ ଏକ ଦୈନିକ ଖବର କାଗଜରେ ଖବରଟିଏ ପଢ଼ି ଆମ୍ଭର ନେତ୍ର ଫାଡ଼ି ହୋଇଗଲା । ଅନୁଷ୍ଠାନମାନେ ଦୋଷ ଘୋଡ଼ାଇବାକୁ ଯାଇ ଉପରେ କଞ୍ଚାମିଛ କହିପାରନ୍ତି ! କଥା ହେଲା, ଆମ ରାଜ୍ୟରେ ଏଡ୍‌ସ ରୋଗ ନିୟନ୍ତ୍ରଣରେ ନାହିଁ ଯଦିଓ ଏହାର ନିୟନ୍ତ୍ରଣପାଇଁ ପ୍ରକଳ୍ପଟିଏ ଏବଂ ଏହା ଅଧୀନରେ ଅନେକ କାର୍ଯ୍ୟକ୍ରମମାନ ଆୟୋଜନ କରାଯାଉଛି । ଜାତୀୟ ସ୍ତରରେ ରୋଗର ମାତ୍ରା କମ ହୋଇ ଆସୁଥିବା ବେଳେ କିନ୍ତୁ ଓଡ଼ିଶାରେ ଏହାର ବିପରୀତ ହେଉଛି । ଅବଶ୍ୟ ଆମ ରାଜ୍ୟର କର୍ମକର୍ତ୍ତାମାନେ ଏହାକୁ ମାନିବାକୁ ନାରାଜ । ମାନିବେ ବା କେମିତି ? ସେମାନଙ୍କ ମତ ହେଲା, ବହୁ ସଂଖ୍ୟକ ଶ୍ରମିକ କର୍ମ ଅନ୍ୱେଷଣରେ ଅନ୍ୟରାଜ୍ୟକୁ ଯାଉଛନ୍ତି, ଏବଂ ସେଠାରୁ ଏହି ରୋଗଧରି ନିଜ ଗାଁକୁ ଫେରୁଛନ୍ତି । ଏହା ହିଁ ଓଡ଼ିଶାରେ ଏଡ୍‌ସ ବ୍ୟାପିବାର ପ୍ରମୁଖ କାରଣ । ଅନ୍ୟକୁ ଦୋଷ ଲଦିଦେବାର ଏମିତି ବଳିଷ୍ଠ ଉଦାହରଣ ହୁଏତ ଅନ୍ୟ କୌଣସି ସ୍ଥାନରେ ପାଇବେ ନାହିଁ । ପାଠକେ ଗୋଟିଏ କଥା ଲକ୍ଷ୍ୟ କରନ୍ତୁ, ଏଥିରେ ଅନ୍ୟ ରାଜ୍ୟମାନଙ୍କୁ ଦୋଷୀ ବୋଲି କୁହାଯାଉଥିବା ବେଳେ ରାଜ୍ୟର ଚିରାଚରିତ ଶତ୍ରୁ କେଣ୍ଡ୍ରର (କେନ୍ଦ୍ର)କୁ ଏଥିରେ ବାଦ୍ ଦିଆଯାଇଛି । ହେଲେ ଯାହା ଆମ୍ଭେ ବୁଝିପାରୁନାହୁଁ, ତାହା ହେଲା,







ରାଜ୍ୟରେ ଗଢ଼ି ଉଠିଥିବା ଛୋଟ ଛୋଟ ଶିଳ୍ପାନୁଷ୍ଠାନ ଯାହା ରୋଗ ପ୍ରସାର କରାଇବାର ମଧ୍ୟ ଏକ କାରଣ । ଏକ ସଙ୍ଗେ ଦୁଇଟି କଥା କିପରି ସମ୍ଭବ ତାହା ଆମ୍ଭର ଛୋଟ ମଗଜରେ ବହୁ ଚେଷ୍ଟାପରେ ମଧ୍ୟ ଢୁକି ପାରୁନାହିଁ । ଖବର କାଗଜରେ ଏହା ମଧ୍ୟ ଲେଖାଅଛି ଯେ, ମହିଳା ମାନଙ୍କ ମଧ୍ୟରେ ସଚେତନତାର ଅଭାବ ରୋଗ ବ୍ୟାପିବାର ଆଉ ଏକ ପ୍ରମୁଖ କାରଣ । କିନ୍ତୁ ଆମ୍ଭେ ଏହା ମାନିବାକୁ ନାରାଜ । ବହୁବର୍ଷ ପୂର୍ବେ ରୋଗ ପ୍ରସାରର ଏହା ପ୍ରମୁଖ କାରଣ ଥିଲା ଆଉ ଏବେ ମଧ୍ୟ ଅଛି । ଏଭଳି ଏକ ଉକ୍ତି ଯେ ଘୋର ନାରୀ ବିରୋଧୀ ଏହା ଆମ୍ଭେ ହଲପ୍ କରି କହିପାରୁ । ଅସଲ କଥା ହେଲା ବିଲେଇ ବେକରେ ଘଣ୍ଟି ବାନ୍ଧିବ କିଏ ? ଯେତେ ଯାହା ହେଲେ ବି ବିଲେଇ ରାଜାଘର ପୋଷା ।

ଆମ୍ଭର ଦିବ୍ୟ ଜ୍ଞାନ ବଳରେ ଆମ୍ଭେ ଜାଣିବାକୁ ପାଇଲୁ ଯେ, ଯାବତ୍ ପ୍ରଚେଷ୍ଟା ସତ୍ତ୍ୱେ ଏହି ରୋଗ କମ୍ ନ ହେବାର କାରଣ ରାଜ୍ୟରେ ଗଢ଼ି ଉଠିଥିବା ଛୋଟ ଛୋଟ ଧର୍ମାନୁଷ୍ଠାନ ବା ବାବାଙ୍କ ଆଶ୍ରମ । କାରଣ ସେଠାରେ ସିଧା ସଳଖ ଆତ୍ମା ସହ ପରମାତ୍ମାଙ୍କ ମିଳନ ହୁଏ । ଚରମ ଆନନ୍ଦର ପ୍ରାପ୍ତି ହୋଇ ମୋକ୍ଷ ପାଇଁ ବାଟ ଫିଟିଥାଏ । କଣ୍ଡୋମ ପରି ସୁରକ୍ଷା କବଚକୁ ସେଠାରେ ନକାରାତ୍ମକ ଦୃଷ୍ଟିରେ ଦେଖାଯାଏ । ଆଉ ଏ କଥା ମଧ୍ୟ ସତ୍ୟ ଯେ ରୋଗ ପ୍ରସାରରେ ସାହାଯ୍ୟ କରୁଥିବା ଅନ୍ୟ କାରଣ ହେଉଛି ପୁରୁଷ ମାନଙ୍କ ମଧ୍ୟରେ ଅସଲ ପୁରୁଷ ପଣିଆର ଘୋର ଅଭାବ ଏବଂ ମୁଣ୍ଡି ଝାଡୁଣି ଚଳାଇବାରେ ମହିଳାମାନଙ୍କର ଅଭ୍ୟାସର ଅଭାବ । ଏବେତ ଭାକ୍ୟୁମ୍ କ୍ଲିନରର ଯୁଗ । ସେ ଅସ୍ତ୍ର ମିଳୁଛି ଆଉ କୋଉଠି ?

ଆମ୍ଭର କାମ ହେଲା ଚେତେଇ ଦେବା । ଶୋଇ ରହିଁଥିବା ସରକାର ଆଉ ରହିଁ ଶୋଇଥିବା ଜନସାଧାରଣ କେବେ ଉଠିବେ ସେ କଥା ସେମାନଙ୍କ ଚୈତନ୍ୟ ଶୁଦ୍ଧି ଉପରେ ନିର୍ଭର କରେ । ଆମ୍ଭେ ପୂର୍ବାନୁମାନ କରିପାରିବୁ ନାହିଁ ।

ମଧ୍ୟଖଣ୍ଡୀ । ଶ୍ରୀ ବଳଦେବଜୀଉ
କେନ୍ଦ୍ରାପଡ଼ା - ୭୫୪୨୧୨
ମୋବାଇଲ୍ : ୯୮୫୩୧୧୭୭୨୦
ଇମେଲ୍ : dr.srmishra@gmail.com



ଏହି ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ



# ଭିନ୍ନ ଏକ ପ୍ରେମିକା !!!



ଭାଗୀରଥି ବେହେରା

ସେଦିନ ମାର୍କେଟରେ ବୁଲୁ ବୁଲୁ ହଠାତ୍ କାହାର ହାତ ମୋ ହାତକୁ ଭିଡ଼ି ଧରିଲା । ପଛକୁ ଚାହିଁ ଦେଖେ ତ ବଡ଼ ବଡ଼ ଆଖି ନେଇ ଅନେଇ ରହିଛି ଅମି । ତା ଓଠରେ ଅଳ୍ପ ଅଳ୍ପ ହସ ଦେଖି ମୁଁ ମଧ୍ୟ ଫେଁ କିନା ହସିଦେଲି । ଏତେ ଦିନପରେ ତାକୁ ଦେଖି ମୁଁ ଆଶ୍ଚର୍ଯ୍ୟ ନ ହେବାରୁ ସେ ନଜର ଓଠ ଚାପି ରହିଲା । ଏଣୁ ମୋତେ ହିଁ ବାଧ୍ୟ ହୋଇ ପାଟି ଖୋଲିବାକୁ ପଡ଼ିଲା ।

- ଆରେ ଅମି ତୁ ଏଠି ! ଲଙ୍ଗ୍ ଟୁର୍‌ରେ ଗଲାଭଳି କେତେ ଦିନ ଉଭେଇ ଯାଇଥିଲୁ । ଆଉ ବାବା ବୋଉ ସୁମି ସମସ୍ତେ...

ମୋର ଏତିକ କଥାରେ ସେ ଚାରି ଆଡ଼କୁ ଅନେଇଲା । ରାସ୍ତା ମଝିରେ ଠିଆ ହୋଇଥିବା ହେତୁ ସମସ୍ତଙ୍କ ନଜର ଆମ ଆଡ଼େ । ସେ କହିଲା ଚାଲ ଆମେ ପାର୍କ ଆଡ଼େ ଟିକେ ଯିବା । ଅନିଚ୍ଛା ସତ୍ତ୍ୱେ ଏକ ଅଦେଖା ଆକର୍ଷଣରେ ତା ସହ ଚାଲିଲି ।

ସମୟ ପ୍ରାୟ ସନ୍ଧ୍ୟା ସାଢ଼େ ଛଅଟା । ଗାନ୍ଧୀ ପାର୍କର ଗୋଟିଏ ପାଖର ସିମେଣ୍ଟ ଚଟାଣରେ ମୁଁ ତା ସହିତ ବସିଗଲି । ସେ ମୋ ମୁହଁକୁ ଚାହିଁଲା । ମୁଁ ମଧ୍ୟ ଦେଖିଲି । ତା'ର ମୁହଁଟା କେମିତି ଝାଉଁଳିଆ ଦେଖା ଯାଉଥିଲା ।





ସେ ତଳକୁ ମୁଣ୍ଡଟା ପୋତିବା ଦେଖି ମୁଁ ତା ଅବସ୍ଥା ବୁଝିବାକୁ ପ୍ରୟାସ କରି ପଚାରିଲି; କିଛି କହିବୁ ନା ଏମିତି ଚୁପଚାପ୍ ବସିଥିବୁ ?

ଲୁହଭରା ଆଖିରେ ସେ ମୋ ଆଡ଼କୁ ଚାହିଁଲା ପରେ ମୁଁ କ'ଣ ହେଲା ବୋଲି ପଚାରିଲି । ମୋର ପାପୁଲି ଦୁଇଟି ଟାଣିନେଇ ପ୍ରଥମେ ଚୁଚୁମି ତାପରେ ତା ଦୁଇ ଆଖିରେ ଲଗାଇ ଓଦା କରିଦେଲା । ମୁଁ ପଚାରିଲି - 'ଏ ଅମି, ତୁ ଏମିତି କାନ୍ଦୁଛୁ ଯେ ?' ତାପରେ ସେ 'ସୁମି' ବୋଲି ପଦେ କହିଦେଇ ପୁଣି କାନ୍ଦି ଉଠିଲା । ମୁଁ ପଚାରିଲି - 'କଣ ହେଲା ସୁମିର ?' ସେ କାନ୍ଦି କାନ୍ଦି କହିଲା, 'ସୁମି ଆମକୁ ଛାଡ଼ି ସବୁଦିନ ପାଇଁ ଚାଲିଗଲା ।'

ମୁଁ ଯେମିତି ଏକଥା ଶୁଣି ଗଳିପଡ଼ିଲି କେଉଁ ଅନ୍ଧାରୁଆ ପାଣିନଥିବା କୁଅରେ । ଜଳ ବିହୀନ କୁପରେ ପଡ଼ି ସତେ ଯେପରି ମୋ ଗୋଡ଼ହାତ ସବୁ ଖଣ୍ଡିଆ ଖାବରା ହୋଇଗଲା ।

ନିଜକୁ ନିୟନ୍ତ୍ରଣ କରି ତାକୁ ଅନେଇଲି । ସେ ପର୍ଯ୍ୟନ୍ତ ସେ ସକସକ ହୋଇ କାନ୍ଦୁଥିଲା । ତା ମୁଣ୍ଡଉପରେ ହାତ ରଖିଲି । ସ୍ନେହରେ ତା ବାଳ ଆଉଁସି ଦେଲି । ମୋ ଅଜାଣତରେ ମୋ ଆଖି ଦୁଇର ଅମାନିଆ ଲୁହ ଦେଖି ସେ ମୋତେ ଭିଡ଼ି ଧରିଲା । ମୋ ପ୍ରଶସ୍ତ ଛାତିରେ ତା କାନ୍ଦୁରା ମୁହଁର ଗରମ ନିଶ୍ୱାସ ବହିଜ ଯାଉଥିଲା । ହୁଏତ ମୁଁ କେବେ ସ୍ୱପ୍ନ ଦେଖିଥିଲି ଏମିତି ସନ୍ଧ୍ୟା, ଏପରି ନିର୍ଜନ ପାର୍କରେ ମୋ ଦେହରେ ଲାଗି ବସିଥିବା ଅମିର ବଡ଼ ଭଉଣୀ ସୀମା ଅର୍ଥାତ ସୁମିକୁ । ତା ସହ ମୋର ସଂପର୍କଟା ଗୋଟି ଗୋଟି ହୋଇ ମନେ ପଡ଼ି ଯାଉଥିଲା ।

X X X X X

ଦଶମ ପାସ ହୋଇ ମାମୁଁ ଘରକୁ ଯାଇଛି ଛୁଟି କାଟିବା ପାଇଁ । ସେତେବେଳେ ତାଙ୍କ ଘରେ ପହଞ୍ଚି କଲିଂବେଲ୍ ଟିପିଲି, ପନ୍ଦର ବର୍ଷର ପାତଳ ଝିଅଟିଏ ଦ୍ୱାର ଖୋଲିଲା । ମୁଁ ଭାବିନେଲି ଇଏ ବୋଧହୁଏ ସୀମା । ବୋଉ ସେମିତି କହୁଥିଲା । ଗୋରି ରଙ୍ଗ, ପତଳା ଶରୀର, ଭାରି ଚଗଲିଟିଏ । ତାକୁ ପିଲାଦିନୁ କେବେ ଦେଖିନଥିଲି । ତାକୁ ମୁଁ କଣ କହିବି ଭାବିଲା ବେଳକୁ ସେ ପଚାରିଲା - କାହାକୁ ଖୋଜୁଛନ୍ତି ?

ମୁଁ ଚୁପଚାପ୍ । ମୋଠାରୁ କିଛି ଉତ୍ତର ନ ପାଇ ସେ ପାଟିକଲା - ବୋଉ ଆସିଲୁ ଦେଖିବୁ କିଏ ଆସିଛନ୍ତି । ଡାକ ଶୁଣି ମାଇଁ ଧାଇଁ ଆସି ମତେ ଦେଖି କହିଲେ - ଆରେ ଅମୁ । ଆସ ପୁଅ ଆସ । ଘର ଭିତରକୁ ଆସ । ଆଲୋ ଚଣ୍ଡାଳୁଣି । ଇଏ ପରା ତୋ ସାନ ପିଉସୀଙ୍କ ପୁଅ ଅମୁ । ଏହା କହି ମାଇଁ ଭିତରକୁ ଚାଲିଗଲେ । ସୀମା ସେମିତି ତାଟକା ହୋଇ ମୋତେ ଚାହିଁ ରହିଥାଏ ।

ସେଦିନ ଜହ୍ନ ଆଲୁଅ ରାତିରେ ଛାତ ଉପରେ ବସି ଆକାଶକୁ ଚାହିଁଥାଏ । ମୋ ଗାଆଁର ସେଇ ଆକାଶ, ସେଇ ଜହ୍ନ, କିନ୍ତୁ ପରିବେଶ ଅଲଗା । ମୋ ନିରବତା ଭଙ୍ଗକରି



ସୀମା ଡାକିଲା - ବୋଉ ଡାକୁଛି ଖାଇବ ଆସ । ଦେଖିଲି ଛାତ ଉପରେ ଆଉ କେହି ନାହିଁ, କେବଳ ସେ ଓ ମୁଁ । ଏଣୁ ମଜା କରିବାକୁ କହିଲି - ମୁଁ ଯଦି ଖାଇବାକୁ ନ ଯାଏ ? ସେ ଚଟପଟ୍ ଉତ୍ତର ଦେଲା, 'ନ ଖାଅ, ମୋର କଣ ଯାଉଛି ? ତମ ପେଟ ପୋଡ଼ିବ ଯେ' ଏହା କହି ସେ ଚାଲି ଯାଉଥିଲା । ମୁଁ ଆସ୍ତେ ଡାକିଲି - ସୀମା ଟିକିଏ ଶୁଣ । ମୋ ଡାକ ଶୁଣି ସେ ଆସି କଣ ବୋଲି ପଚାରିଲା । କାନଟା ମୋ'ର ଆଡ଼କୁ ଆଣିଲେ ମୁଁ ଗୋଟିଏ କଥା କହିବି ବୋଲି କହିଲା ପରେ ସେ ବୋକୀ ଝିଅଟି ପରି ମୁହଁଟା ପାଖକୁ ଆଣିଲା । ତା ମୁହଁକୁ ଭିଡ଼ିଧରି ଗୋଲାପୀ ଅଧରରେ ଚୁମାଟିଏ ଆଙ୍କିଦେଲି । ସେ ଛାଡ଼ ଛାଡ଼ କହିଦେଇ ମୋଠୁ ଦୁରେଇ ଗଲା । ଅବଶ୍ୟ ଏ ଘଟଣାରେ ସେ ରାଗିଲା କି ଖୁସିହେଲା ତାକୁ ହିଁ ଜଣା । ସେ କିନ୍ତୁ ଗଲାବେଳେ କହିଦେଇ ଗଲା - ମୁଁ କଥାଟା ବୋଉକୁ କହିଦେବି ରହିଥା । ବୋଉ ନ ଶୁଣିଲେ ବାପାଙ୍କୁ କହିବି । ବାପା ନ ଶୁଣିଲେ ପିଉସା ପିଉସୀଙ୍କୁ କହିଦେବି ।

ତା'ଧମକ ଶୁଣି ମୋ ଗୋଡ଼ହାତ ଥରିବା ଆରମ୍ଭ କଲା । ଛି, ବାପା ବୋଉ ଜାଣିଲେ ବଡ଼ ଅଭଦ୍ର ବୋଲି କହିବେ । ଘରେ ନ କହିବା ପାଇଁ ତା ପଛେ ପଛେ ଯାଇ ତାକୁ ଅନୁନୟ ହେଲି । ମୁଁ ନିଜକୁ ନିଜେ ମଧ ଗାଳିଦେଲି ତାର ମନ କଥାକୁ ନ ବୁଝି ପ୍ରେମିକାର ବ୍ୟବହାର କରିଥିବାରୁ । ଖାଇ ବସିଲା ବେଳେ କଣେଇ କଣେଇ ଚାହୁଁଥିଲି କାଳେ ମାମୁଁ ମାଇଁ ଜାଣି ଦେଇଥିବେ ବୋଲି । ଖିଆପିଆ ସରିବାପରେ ଶୋଇବା ଘରେ ଯାଇ ଶୋଇଲି ।

ରାତି ପ୍ରାୟ ଦଶଟା ହେବ । ଭାରି ଅଡୁଆ ଲାଗିଲା । ଭାବିଲି ରାତି ପାହିଲେ ଗାଁକୁ ଚାଲିଯିବି । ଦ୍ୱାର ଖୋଲି କିଏ ଆସିବା ଦେଖି ଆଖିବୁଜିଦେଇ ଶୋଇବାର ଅଭିନୟ କଲି । ଆଗନ୍ତୁକ ଲାଇଟ୍ ଅନ୍ କରି ମୋ ଉପରେ ଚାଦର ଘୋଡ଼େଇ କପାଳରେ ସରୁ ଚୁମାଟିଏ ଦେବାରୁ ମୁଁ ଆଖି ଖୋଲି ଦେଖିଲି ସେ ଆଉ କେହି ନୁହେଁ ସୀମା । ତାକୁ ଯୋରରେ ଟାଣିଦେଇ ଖଟରେ ଗଡ଼ାଇ ଦେଇ କହିଲି - ମୋ ଜିନିଷ ମୋତେ ଫେରାଇ ଦେଲି । ଏଥର କାହାକୁ କହିବ ନାହିଁ ।

ପ୍ରେମ ରାଜିନାମାରେ ଦୁହେଁ ସ୍ୱାକ୍ଷର କଲାପରେ ଆଉ ଦୁନିଆକୁ କିଏ ପଚାରେ । ତା'ପରେ ସେଇ ଛାତ ଉପରେ ଆମେ କେତେ ଯେ ଜହ୍ନରାତି ବିତେଇଛୁ, ତାର ମୁକସାକ୍ଷୀ ସେଇ ଆକାଶ । ମୁଁ ମାମୁଁଙ୍କ ଗାଁରେ ଯୁକ୍ତ ଦୁଇ ପଢ଼ିବାରୁ ପ୍ରେମପଥ ନିଷ୍କଣ୍ଟକ ହୋଇଥିଲା । ଚାହୁଁ ଚାହୁଁ ଦୁଇବର୍ଷ ବିତିଗଲା । କିଛି ଜଣାପଡ଼ିଲା ନାହିଁ । ପରୀକ୍ଷା ସରିବାପରେ ଯେତେବେଳେ ବିଦାୟର ଦିନ ଆସିଲା, ସେ ଖୋଲା ଆକାଶର ଜହ୍ନରାତି କେମିତି ଫାକୁଣ୍ଡିଆ ମନେ ହେଲା ।

ସେଦିନ ଛାତ ଉପରେ ମୋ ଆଖି ଦୁଇଟାକୁ କିଏ ବୁଜି ଧରିଲା ନିଜ କଅଁଳ ହାତରେ । ତାକୁ ଭିଡ଼ି ଆଣି





ଚୁମାଟିଏ ଦେଇଥିବେଳକୁ ଦେଖିଲି ସେ ଅମି, ବାରବର୍ଷର ଅମି । ଖିଲଖିଲ ହୋଇ ସେ ହସିଉଠିଲା । ତାକୁ ତଳକୁ ଓହ୍ଲାଇଦେଇ ଲାଜର ସହ ଅନୁତାପ କଲି । ସେ ପଚାରିଲା - କଣ ସବୁ ଭାବୁଛ ଅମୁ ଭାଇ ? ତା ପ୍ରଶ୍ନରେ ବିଚଳିତ ପ୍ରାୟ ହୋଇ କହିଦେଲି - ନା କିଛି ନାହିଁ । କାଲି ମୁଁ ତୁମମାନଙ୍କୁ ଛାଡ଼ି ଚାଲିଯିବି ତ ! ତେଣୁ ମନରେ ଦୁଃଖ କରୁଛି । ସେ ମୋତେ ଚାହିଁ କହିଲା, 'ସତରେ ତୁମେ ଆମକୁ ଭୁଲାଇ ଦେଇ ଚାଲିଯିବ ଅମୁଭାଇ ?' ଏତିକି କହିଦେଇ ସେ ମୋ ଛାତିରେ ମୁଣ୍ଡରଖି ମୋତେ ଭିଡ଼ି ଧରିଲା । ତାକୁ ଏଭଳି ହେବା ଉଚିତ ନାହିଁ ବୋଲି ବୁଝାଇଦେଲି । ସେ ଗଲାବେଳେ ଅପାକୁ ଛାତ ଉପରକୁ କହିଦେ ବୋଲି ତାକୁ କହିଲି ।

କିଛି ସମୟପରେ ସୀମା ଆସି ମୋ କୋଳରେ ଛାତିରଖି ବହେ କାନ୍ଦିଲା । ଗାଁ ତାଳ ବଣର ସେ ବୋହୁଚୋରୀ ଖେଳ ମନେ ପକାଇ ଯୁଗ ଯୁଗ ପାଇଁ ଚିହ୍ନି ଜଜର କରିବ ବୋଲି କହିଲା । ଅପେକ୍ଷା ନ କରି ପାରିଲେ କ୍ଷମା କରିଦେବ ବୋଲି କହି ମୋ କପାଳରେ ଚୁମାଟିଏ ଦେଲା । ଆମର ସେଇ ଶେଷ ପ୍ରେମର ମୁକସାକ୍ଷୀ ହୋଇ ରହିଲା ଆକାଶ କୋଳରେ ଥିବା ଜହ୍ନ କେବଳ ପାପୁଲିଏ ଲୁହ ଲାଞ୍ଜପାଇ ।

X X X X X X

ଅମିକୁ ଚାହିଁଲି । ସେଇ ବାରବର୍ଷର ଅମି ଆଜି କେତେ ବଡ଼ ଝିଅଟିଏ ହେଲାଣି । ତାର ସେ ଭିଜଲା ଆଖିକୁ ଚାହିଁ ସୁମି କେମିତି ମଲା ବୋଲି ମୁଁ ପଚାରିଲି । ସେ କହିଲା - ସବୁ ଶୁଣିବାପରେ ବି ମୋତେ ଘୃଣା କରିବନି ତ ?

ମୋ ଠାରୁ ପ୍ରତିଶୃତିନେଇ ସେ ତା ଜୀବନ ଇତିହାସର ପୃଷ୍ଠା ଖୋଲି ବକ୍ତବ୍ୟ ଆରମ୍ଭ କଲା; ତୁମେ ସୁମି ଅପାକୁ ଭଲ ପାଉଥିଲ । ଅପା ମଧ ତୁମକୁ ଭଲ ପାଉଥିଲା । ତୁମର ଏ ପ୍ରେମ ସମ୍ପର୍କ ଦେଖି ମୋ ଅଜାଣତରେ ମୋ ମନରେ ମଧ ତୁମ ପ୍ରତି ପ୍ରେମଭାବ ଜାଗ୍ରତ ହେଲା । ତୁମ ପ୍ରେମ ପଥରେ କଣ୍ଟକ ନ ହେବାପାଇଁ ମୁଁ ମନ ଖୋଲି କିଛି କହିପାରିଲିନି । ଅପାର ଡାଏରୀ ଲୁଚାଇ କରି ପଢୁ ପଢୁ ମୋ ପ୍ରେମ ଆହୁରି ସତେଜ ହେଲା ।

ଗୋଡ଼ ଆଙ୍ଗୁଠିରେ ଗାର ଟାଣୁ ଟାଣୁ ସେ ପୁଣି କହିଲା - ସେଦିନ ଛାତ ଉପରେ ତୁମେ ମୋତେ ଭିଡ଼ିନେଇ ଚୁମା ଦେବାପରେ ମୁଁ ଭାବିଲି ତୁମେ ଅପାପରି ମୋତେ ବି ଭଲ ପାଉଛ । ତୁମେ ଆସିଲାପରେ ତୁମ ଅନୁପସ୍ଥିତିରେ ତୁମକୁ ଅଧିକ ଭଲ ପାଇଲି । ସବୁ ବିଷୟ ମୁଁ ମୋ ଡାଏରୀରେ ଟିପି ରଖୁଥିଲି । ଏପରିକି ତୁମକୁ ନ ପାଇଲେ ମୁଁ ଜୀବନ ହାରିଦେବି ବୋଲି ମଧ ଲେଖିଥିଲି ।

ତାପରେ ଏକ ଦୀର୍ଘଶ୍ୱାସ ମାରି କହିଲା - ଦୁର୍ଭାଗ୍ୟବଶତଃ ଅପା ସେ ସବୁ ଜାଣିପାରି ଛୋଟ ଭଉଣୀର ସୁଖ ପାଇଁ ନିଜକୁ ଜଳାଞ୍ଜଳି ଦେଲା । ଦିନେ ଅପାର ରୁମକୁ







ଗଲାବେଳେ ଦେଖିଲି ତା ମୁହଁ ଶେତା ପଡ଼ିଯାଇଛି । ମୁଣ୍ଡପାଖରେ ଏକ ଚିଠି ରଖିଦେଇ ସେ ଚିରଦିନ ପାଇଁ ଆଖି ବୁଜିଦେଲା । ଏଥିପାଇଁ ମୁଁ ନିଜକୁ ଦୋଷୀ ବୋଲି ମନେକଲି । କିନ୍ତୁ ଡାକ୍ତର ସାର୍ଟିଫିକେଟରେ କାରଣଟା ଅଲଗା ଦର୍ଶାଯାଇ ଶବସତ୍କାର କରାଗଲା । ତାପରେ ଗାଁ ଘର ଛାଡ଼ି ଆମେ ଏଇ ସହରକୁ ଚାଲି ଆସିଲୁ । ସେହି ଦିନଠାରୁ ମୁଁ ତୁମକୁ ଖୋଜି ବୁଲୁଥିଲି । ତୁମେ ମୋତେ କ୍ଷମା ଦେଇ ମୋ ପ୍ରେମକୁ ସ୍ୱୀକାର କଲେ ଅପାର ଆତ୍ମା ଶାନ୍ତି ପାଇବ । ତା'ର ଆତ୍ମବଳି ସାର୍ଥକ ହେବ ।

ସୀମାର ଆତ୍ମାଶାନ୍ତି ପାଇଁ ମୁଁ ଅମିକୁ ନିଜ ବକ୍ଷକୁ ଟାଣିନେଲି । ସେଇ ଆକାଶର ସେଇ ଜହ୍ନ ତଳେ ମୋ କୋଳରେ ଥିଲା ଭିନ୍ନ ଏକ ପ୍ରେମିକା ।

# ଗୋପନରେ ଚିଠିଟିଏ



ଜୟନ୍ତୀ ବେହେରା



ଏଇ ଶୁଣ !

ମୁଁ ତୁମକୁ ବହୁତ ବହୁତ ଭଲ ପାଏ । ଏକଥା କ'ଣ ତୁମେ ଜାଣିନ କି ? ତୁମକୁ ମୋ ଭଲ ପାଇବାର ଗୁଣ ମୋ ଚିଠିକୁ ମନଦେଇ ହୃଦୟର ସହ ପଢ଼ିବ । ଆଜଯାଏଁ ମୁଁ ତୁମକୁ କିଛି ମାଗିନି । ଆଜ ଯାହା ମାଗୁଛି ତୁମେ ଦେବ... ।

ମୁଁ ଏକ ନୂଆ ଜନ୍ମନେବାକୁ ଯାଉଛି । ଏକ ନୂଆ ଭବିଷ୍ୟତ ଗଢ଼ିବାକୁ ଯାଉଛି । କିଏ ଜାଣେ ଭବିଷ୍ୟତ ମୋର ଆଲୋକିତ ଅବା ଅନ୍ଧକାରମୟ । ତଥାପି ମୁଁ ପ୍ରସ୍ତୁତ ହେଉଛି, ଏକ ନୂତନ ଜୀବନକୁ ରଙ୍ଗଦେଇ ରଙ୍ଗମୟ କରିବାକୁ । ଅନ୍ୟମାନେ କୁହନ୍ତି ଆଉ ତୁମେ ବି କୁହ ମୁଁ ବେଶୀ ଭାବପ୍ରବଣ । ହୋଇପାରେ କଥାଟି ସତ୍ୟ । ହଁ, ମୁଁ ବେଶୀ ଭାବେ ଆଉ ଆଖି ଖୋଲି ସ୍ୱପ୍ନ ଦେଖେ । ମୁଁ ଭାରି ସ୍ୱପ୍ନବିଳାସୀ । ତୁମକୁ ନେଇ ମୋର ଅନେକ ଦିନର ନିଜର ସାଇତା ସ୍ୱପ୍ନ ଥିଲା । ଆଜ ମୁଁ ମୋର ସେହି ଏକାନ୍ତ ସାଇତା ସ୍ୱପ୍ନକୁ ନେଇ ହିଁ ମୋ ଭବିଷ୍ୟତ ଜୀବନକୁ ଅଭିଷେକ କରିବ । ହୋଇପାରେ ସେ ସ୍ୱପ୍ନରେ ତୁମେ ନଥାଇ ପାର । ମୁଁ ତୁମକୁ ସ୍ୱପ୍ନରେ ପାଇ ନପାରେ । ଅର୍ଥାତ୍ ମୋ ସ୍ୱପ୍ନ ନାୟକର ଚରିତ୍ର ବଦଳି ଯାଇପାରେ ।





ମାତ୍ର ମୁ ତ ନିଜେ ନାୟିକା ସାଜିବି ନା !!!

ଜୀବନ ତ ରଙ୍ଗମଞ୍ଚ । ସେ ରଙ୍ଗମଞ୍ଚରେ ଆମେ ସବୁ କ୍ଷଣକାଳ ପାଇଁ ନାୟକ ଓ ନାୟିକା ।ଏକ ସଫଳ ନାୟିକା ହେବାପାଇଁ ନାରୀକୁ ମାନେ ମୁଁ ନିଜକୁ ଚାରିଖଣ୍ଡ କରିବାକୁ ପଡ଼ିବ । ଭଗିନୀ, ପ୍ରଣୟିନୀ, ଯାମିନୀ ଓ ଜନନୀ । ମୁଁ ଦୁଇଟା ଚରିତ୍ରରେ ଅଭିନୟ କରି ସାରିଲଣି, କରୁଛି ଆଉ କରୁଥିବି ମଧ୍ୟ । ଆଉ ଦୁଇଟା ଚରିତ୍ର ବାକି ଅଛି । ସେଇ ଚରିତ୍ର ଗୁଡ଼ାକ ବି ଆପେ ଆପେ ଅଭିନୟ ମୋ ଦ୍ୱାରା ହୋଇଯିବ ସମୟ ସାଥିରେ ତାଳଦେଇ ଚାଲିଲେ ।

ହଁ, କଷ୍ଟ ହେଉଛି । ଅସହ୍ୟ କଷ୍ଟ । ଏ ଦୁଇଟା ଚରିତ୍ରକୁ ଜୀବନରେ ଆପଣାଇବା ପାଇଁ । କିନ୍ତୁ କରିବି କଣ ? ଉପାୟ ନାହିଁ । ପଛଘୁଞ୍ଚା ଦେବାପାଇଁ ଉପାୟ ହିଁ ନାହିଁ । ଭାଗ୍ୟର ଆଧିପତ୍ୟ ମୋ ଉପରେ ଏତେ ପ୍ରବଳ ଭାବରେ ପ୍ରଭାବ ପକାଉଛି ଯେ ମୁଁ ସେଥିରୁ ନିସ୍ତାର ପାଇ ପାରୁନି ।

ତୁମେ ମୋର ଖୁସି, ତୁମେ ମୋର ସୁଖ । ତୁମ ବିନା ଜୀବନ ମୋର ଅପରିପୂର୍ଣ୍ଣ । ତାହା ହେଲେ କଣ ବଞ୍ଚିବାପାଇଁ 'ସୁଖ / ଆନନ୍ଦ / ସନ୍ତୋଷ' ନିହାତି ଦରକାର ? ବଞ୍ଚିବାପାଇଁ 'ପୂର୍ଣ୍ଣତା' କଣ ନିହାତି ଆବଶ୍ୟକ ? ଏହା ବିନା କଣ ମୁଁ ବଞ୍ଚିପାରିବିନି ?

ହୋଇପାରେ ତୁମେ ମୋ ପାଇଁ ମହାମୋହ, ମାୟାର ଏକ ଶକ୍ତ ବନ୍ଧନ । ଆଜି ତୁମେ ଦୂରରେ, ତେଣୁ ତୁମେ ମୋ ପାଇଁ ସୌନ୍ଦର୍ଯ୍ୟର ଗନ୍ତାଘର । ଦୂରକୁ ଯେମିତି ପର୍ବତଟି ସୁନ୍ଦର ଚିରକାଳ ପାଇଁ । ହଁ, ତୁମକୁ ନ ପାଇଲେ ମୁଁ ଅପୂର୍ଣ୍ଣ, ମୋର ଅବଶୋଷ ରହିଯିବ । କିନ୍ତୁ କିଏ ଜାଣେ ନିକଟରେ ପାଇଲେ ତୁମେ ମୋ ପାଇଁ କଦାକାର ହେବ ନା ନାହିଁ? ଏ ବିନାଶଶୀଳ ରକ୍ତମାଂସ ଦୁର୍ଗନ୍ଧଯୁକ୍ତ ଦେହର ମୋହ ଚିରସ୍ଥାୟୀ ନୁହଁ । ମଣିଷ ବି ସଦା ପରିବର୍ତ୍ତନଶୀଳ, ଏ ସଦା ପରିବର୍ତ୍ତନୀୟ ଦୁନିଆର ପରିସ୍ଥିତିରେ ପଡ଼ି । ତେଣୁ ମୋତେ ମୋହିତ କରୁଥିବା ତୁମ ପାଖରେ ଥିବା ସେଇ ଗୁଣ ସୁଗୁଣ ଗୁଡ଼ିକ ଦିନେ ଲୋପପାଇବନି ବୋଲି ଏ କଥାର ଗ୍ୟାରେଣ୍ଟି କିଏ ଦେବ ? ବରଂ ତା'ଠାରୁ ଭଲ, ମୁଁ ତୁମଠାରୁ ଦୂରେଇ ରହେ । ତୁମେ ମୋ ଠାରୁ ଦୂରରେ ରୁହ । ଏକ ନିତ୍ୟ ସତ୍ୟ ଶାଶ୍ୱତ ସୁନ୍ଦର ଭଲପାଇବା ଆମ ଭିତରେ ଚିର ଜାଗ୍ରତ ହୋଇ ରହିଥାଉ କାଳକାଳକୁ ।

ହଁ, ମୁଁ ବଞ୍ଚିବି ତୁମ ବିନା । ମୋତେ ବଞ୍ଚିବାପାଇଁ ଟିକେ ଖୋଲାପବନ, ପାଣି ଓ ଖାଦ୍ୟ ଦରକାର । ସେତକ ତ ପ୍ରକୃତି ମୋତେ ସବୁବେଳେ ଦେବ । ବାସ୍, ସୁଖ ବିନା ମାନେ ତୁମ ବିନା ମୁଁ ବଞ୍ଚିବି, ନିଶ୍ଚୟ ବଞ୍ଚିବି... ମୃତ୍ୟୁ ଆସିଲା ଯାଏଁ ।

ପ୍ରାଣ ମୋର । ତୁମେ ଭଲ ଭାବରେ ଜାଣ ଆମ ସମ୍ପର୍କର ଭାବ । କେତେ ଦୂରରେ ଥାଅ, ତୁମେ ଯଦି ମୋତେ ମନେ ପକାଉଛ, ଦୀର୍ଘଶ୍ୱାସ ଛାଡ଼ି ଛାଡ଼ି, ସେ ଦୀର୍ଘଶ୍ୱାସର ତତଲା ପବନରେ ମୋ ମନ ଜଳେ । ତୁମେ



ଏହି ଇ-ପତ୍ରିକା ଆହ୍ବାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ





ଯେତେବେଳେ ମୋତେ ଖୋଜ, ମୋତେ ଚାହିଁ ଦୂରରେ ଥାଇ । ମୋ ଶରୀର ଉପସ୍ଥିତ ଥିଲେ ମଧ୍ୟ ମନ ସମୟ ବନ୍ଧନର ଶିକୁଳିରୁ ମୁକ୍ତ ହୋଇ ତୁମ ପାଖକୁ ଚାଲିଯାଏ.. ଆପେ... ଆପେ... । ଯେପରି ଅବସ୍ଥାରେ ଥାଉ ଅବା ଯେଉଁ ପରିସ୍ଥିତିରେ ଥାଉ । ଏ କଥା ତୁମେ କଣ ଜାଣିନି କି ? ଏହା କଳ୍ପନା ନୁହେଁ, ସ୍ୱପ୍ନ ନୁହେଁ... ଏହା ବାସ୍ତବ ଆଉ ସତ୍ୟ ।

ଏ ସବୁ ଜାଣିଲାପରେ ବି ତୁମେ ମୋତେ ଖୋଜୁଥାଅ, ନିଶୁନ୍ ରାତିରେ.. ଅମା ଅନ୍ଧାରରେ । ସମାଜ ନିଶବ୍ଦ । ଆଲୁଅ ଶାନ୍ତ । ସମସ୍ତେ ନିଦ୍ରିତ । ଅନ୍ଧକାର ଜାଗ୍ରତ... ଆଉ ତା ସାଥେ ସାଥେ ତୁମେ ବି ଜାଗ୍ରତ । ଆଜିକାଲି ତ ମୋର ନିଦ ତୁମପାଇଁ ମୋ ସଉତୁଣୀ ସାଜିଛି । କେତେ ଚେଷ୍ଟା କଲେ ବି ଶାନ୍ତିରେ ଶୋଇପାରୁନି । ଆଉ ତୁମେ ପୁଣି ସେ ଅଶାନ୍ତ ନିଦରେ ଅଝଟ ହୁଅ, ଜିଦ୍ କର... ନିକଟରେ ଚାହଁ । ମୋର ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ହେବାରେ ଲାଗିଲାଣି । ତୁମକୁ ଝୁରି ହେଉଥିବା ମୋ ଲୁହର ତାତି ମୋ ଗଣ୍ଡଦେଶ ସହିପାରୁନି । ମନ ଭଲ ରହୁନି । ଭଲରେ ଖାଇପାରୁନି, ପୁଣି ଭଲରେ ଶୋଇପାରୁନି । ମୋତେ ପରା ଏଇ ନିକଟରେ ବେଦୀ ମଣ୍ଡପରେ ନିଜକୁ ପରୀଟିଏ ବେଶରେ ସଜେଇ ବସିବାକୁ ପଡ଼ିବ । ମୋତେ ଏତେ ଜଳେଇଲେ କେମିତି ହେବ ? କଣ ହେବ ମୋ ପରିସ୍ଥିତି ?

ଜଳାଞ୍ଜଳୀ ତ ଦେଇ ଦେଇ ହୃଦୟର ଖୁସିକୁ । ପୁଣି ଏ ହଜେଇବା ଭିତରେ ଖୋଜିବା, ଖୋଜି ପୁଣି ହଜେଇବା... କାହିଁକି ? ସ୍ୱପ୍ନକୁ ଯଦି ବାସ୍ତବତାର ରୂପ ଦେଇପାରିଲିନି, ସେ ସ୍ୱପ୍ନକୁ ଭୁଲିବାକୁ ହେବ ।

ପ୍ରାଣ ମୋର । ମୋ କଥା ରଖିବ । ଖୋଜିବା ବନ୍ଦକର । ମୋତେ ଭୁଲିବ ।

ଇତି

ତୁମର 'ମୁଁ'

ଲାଞ୍ଜିପଲ୍ଲୀ, ବ୍ରହ୍ମପୁର, ଓଡ଼ିଶା



# ହିଂସ୍ରୁକ ମଣିଷ

 କ୍ଷେତ୍ରବାସୀ ଜେନା



କ୍ଷେତ୍ରବାସୀ ଜେନା

ରହ ରହ ଆରେ ହିଂସ୍ରୁକ ମଣିଷ
ଥୟ ଟିକଏ ଧର
ଆଜ ଯିଏ ଥିଲା ଆପଣର ତୋର
କାଲ କଲୁ ସାତ ପର ।୧ ।

ଭାବୁନାହୁଁ ତୁହି, ବେଳ ଗଡ଼ିନାହିଁ
ପରପାଇଁ କରୁ ଫାସ
ଭଲମନ୍ଦ କିଛି ବିଗ୍ଭର ନ କରି
ନିର୍ଦ୍ଦୋଷକୁ ଦେଉ ଦୋଷ

ମାଟି ଯାଇ ଅଛୁ ସବୁ ହଜାଇଛୁ
ମଣିଷପଣିଆ ତୁହି
ମଣିଷ ଜନମ ହେଲା ତୋର ହୀନ
ଲଜ୍ୟା ମୁହେଁ ତୋର ନାହିଁ

ଦିନ ସରିଯିବ ଚିହ୍ନ ରହିଯିବ
କରିପାରିବୁନି ପଶ୍ଚାତାପ
ଆଜ ମଲେ ତୁହି କାଲକୁ ଦି'ଦିନ
କେହି କରିବେନି ଶୋକ

ପର ମନ୍ତ୍ରଣାରେ, ନିଜ ସ୍ଥିତି ହଜାଇଲୁ
ନ ବୁଝିଲୁ ବାସ୍ତବତା
ପାଷାଣ କି ହେଲୁ, ମସ୍ତକ ଛିନ୍ନିଲୁ







ଭୁଲିଗଲୁ ମନୁଷ୍ୟତା

ମାୟାର ଜାଲରେ, ନିର୍ମାୟା ମଣିଷର
ହଜାଇଛୁ ତାର ହସ
କହିପାରୁ ନାହିଁ ବାସ୍ତବତା ତାର
ପଡ଼ିବ ତାର ନିଶ୍ୱାସ

ହେ ପାପୀ ମଣିଷ, ସବୁ ତୋର ଦୋଷ
ବଡ଼ ନାଟ୍ୟକାର ତୁହି
ପରଦା ପଛରେ ବାଣ ତୁ ମାରୁଛୁ
ମୁଖା ତୋ ଖୋଲିବ ମୁହିଁ

ତୋ ପାଳି ଆସିଛି ଯାହା ତୁ କରିବୁ
ଆଗେ ମୁଁ ହୋଇଛି ଛିଡା
ନିଷ୍ଠୁର ତୁ ହେଲୁ ମସ୍ତକେ ଲଦିଲୁ
ବୋଝପରେ ଲଳିତା ବଡ଼ା

ବୋଝ ନୁହେଁ ସେତ ଆଶୀର୍ବାଦ ହେବ
ଗୃହିଁ ରହିଥାରେ ତୁହି
ଜଗିବ ଯେବେ ହେ ନିରୀହ ମଣିଷ
ସତା ତୋ ରଖିବ ନାହିଁ

ଚିହ୍ନି ପାରୁନାହୁଁ ମଣିଷ କୁ ତୁହି
ସ୍ୱାର୍ଥରେ ହୋଇଛୁ ବଶ
ଟଙ୍କା, ସୁନା ଆଉ ସମ୍ପତ୍ତି,
ଲୋଭ ତ କରିଛି ଗ୍ରାସ

ଭାବିଛୁ କି ଆରେ, ଆଖି ଭିତରିରେ
କି କର୍ମ କରୁଛୁ ତୁହି
ଯେତେ ଗଙ୍ଗା ଆଉ ଗୋଦାବରୀ ଗଲେ
ଫଳ ତ ପାଇବୁ ନାହିଁ

ଲୋଭେ ବଶହୋଇ, ମଣିଷକୁ ତୁହି
କରୁଛୁ କେତେ ହିଟହିଟା
ନିଜେ ଖାଉ ଏଠି ପଣସ ପରି
ପର ମୁଣ୍ଡେ ବୋଳୁ ଅଠା

ମନେ ପକା ତୋର ପୂର୍ବପୁରୁଷକୁ
ଛାଡି ଯାଇଛନ୍ତି କର୍ତ୍ତୀ
ଟଙ୍କା, ସୁନା ସମ୍ପତ୍ତି କ୍ଷଣସ୍ଥାୟୀ ଆରେ
ଯଶ ତାଙ୍କ ଅମର ରହିଛି ।

ଯାଜପୁର, ଓଡ଼ିଶା
ମୋବାଇଲ୍ - ୯୯୩୭୧୭୭୩୭୨



ଏହି ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ

# ଗପ ହେଲେ ବି ସତ



ପ୍ରଶାନ୍ତ କୁମାର ନାଥ

ଅଶାଢ଼ ମାସ । ଖରାବର୍ଷାର ଖେଳରେ ଧରଣୀ ମାତା ସୁସଜ୍ଜିତ । ଗଛ ଗୁଡ଼ିକରେ ପତ୍ର କଅଁଳି ସାରିଥାଏ । ସବୁଜ ବନାନୀକୁ ଦେଖିଲେ ମନରେ ଖେଳିଯାଉଥାଏ ଏକ ଆନନ୍ଦର ଲହରୀ ।

ଏହି ଖୁସିର ମୁହୂର୍ତ୍ତରେ ହଠାତ୍ ଆକାଶର ମେଘ ପରି ମୋର ହୃଦୟକୁ ପଶି ଆସିଥିଲା ବର୍ଷା । କେମିତି ଭୁଲିବି ବର୍ଷା ସହ ମୋର ସେହି ପ୍ରଥମ ଦେଖା, ଆଉ ପ୍ରଥମ କଥାକୁ । ଏ ବର୍ଷା ପାଇଁ ମୁଁ ଆଜି ଧନ୍ୟବାଦ ଦେଉଛି ସେ ବର୍ଷାକୁ । ଯଦି ସେଦିନ ଆକାଶରେ ବର୍ଷା ଆସି ନଥାନ୍ତା ତାହେଲେ କଣ ମୋର ଦେଖା ହୋଇଥାନ୍ତା ମୋ ପ୍ରିୟା ବର୍ଷା ସହ ।

ଶୁନ୍‌ସାନ୍ ରାସ୍ତା, ମୁଁ ସେଦିନ ବାଇକ୍ ନେଇ ଯାଉଥାଏ ମୋର ଗନ୍ତବ୍ୟ ପଥରେ । କିନ୍ତୁ କେଜାଣି କାହିଁକି ଆକାଶରେ ଘୋଟି ଆସିଥିଲା ମେଘ । ଆଉ ବରଷି ଗଲା ଧରଣୀ ଉପରେ । କିନ୍ତୁ ଭିଜିବାର ମଜାକୁ ଥଣ୍ଡାର ଡର ପ୍ରତିଘାତ କରୁଥାଏ ।

ରାସ୍ତାରେ କୌଣସି ଗୋଟିଏ ଘର ନଥାଏ । ଖାଲି ମଝିରେ ମଝିରେ ଥାଏ ଗଛ ଗୁଡ଼ିକ । ଗଛରେ ପତ୍ର କଅଁଳି ସାରିଥାଏ । ଶୀତୁଆ ପବନ ଦେହରେ ଶିହରଣ ଖେଳାଇ


ଏହି ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ସମ୍ପୂର୍ଣ୍ଣ ନିଃଶୁଳ୍କ ବିତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତିପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ







ଦେଉଥାଏ । ଝିପି ଝିପି ବର୍ଷା ମଧ୍ୟ ପ୍ରଥମ ପ୍ରେମର ପହିଲି ଛୁଆଁ ପରି ଚୁମ୍ବନ ଦେଇ ଗ୍ଭଲୁଥାଏ ସାରା ଶରୀରକୁ । ତେଣୁ ସେଦିନ ମୁଁ ସେହି ବୁଢ଼ା ବରଗଛ ପାଖେ ନିଜକୁ ସୁରକ୍ଷିତ ସ୍ଥାନ ଭାବି ଗ୍ଭଲିଗଲି ସେହି ବରଗଛ ମୁଳକୁ । ମୋ ପାଇଁ ସେ ବରଗଛଟି ନୂଆ ନଥିଲା, କଲେଜ ପଢୁଥିବା ସମୟରେ କାହିଁ କେତେ ଥର ସେଠାରେ ବସି ଆମେ ଖଟି କରିଛୁ । ଆମ ଖରା ବର୍ଷାର ସାଥି ହେଉଛି ଏହି ବୁଢ଼ା ବରଗଛ । କିନ୍ତୁ ବହୁତ ଦିନ ପରେ ଆଜି ପୁଣି ଥରେ ସେହି ସୁଯୋଗ ଆଣି ଦେଇଛି ଏହି ଅଷାଢ଼ର ବର୍ଷା ।

ସେହି ସମୟରେ କଲେଜରୁ ଫେରୁଥାଏ ଏକ ଝିଅଟିଏ । ଆଉ ସେ ମଧ୍ୟ ବର୍ଷା ଦାଉରୁ ରକ୍ଷା ପାଇବା ପାଇଁ ସେହି ବରଗଛ ମୁଳକୁ ଗ୍ଭଲି ଆସିଲା । ହଠାତ୍ ସେ ମୋତେ ସେଠାରେ ଦେଖି ଚମକି ପଡ଼ିଲା ଆଉ ତାର ହାତରେ ଥିବା ବହି ଗୁଡ଼ିକ ତଳେ ପଡ଼ିଗଲା । କାହିଁକିନା ମୋ ମୁଣ୍ଡରେ ହେଲମେଟ୍ ଥିଲା । ବୋଧହୁଏ ସିଏ ମୋତେ ଦେଖିଲା ପରେ ଡରି ଯାଇଥିଲା । ମୁଁ ମୁଣ୍ଡରୁ ହେଲମେଟ୍‌ଟିକି କାଢ଼ିଦେଲି । ସେ ଟିକେ ଆସ୍ୱସ୍ତି ହେଲା ପରି ମୁଁ ଅନୁଭବ କଲି । କାହିଁକିନା ମୋର ଚେହେରା ଦେଖି ସାରିବା ପରେ ଡରିବାର ଆଉ କିଛି କାରଣ ହିଁ ନଥିଲା ।

ମୋତେ ଦେଖି ସିଏ ଯେମିତି ଦୋ ଦୋ ଚିହ୍ନା ହେଲା ପରି ଲାଗିଲା । ହଠାତ୍ କିଛି ଗୋଟେ କହିବ ଭାବୁ ଭାବୁ ବନ୍ଦ କରିଦେଇଥିଲା । ଆଉ ଗୋଟାଏ ବହିର ପଛ ପୃଷ୍ଠା ଦେଖି ପୁଣି କଣେଇ କଣେଇ ମୋ ଆଡ଼କୁ ଗ୍ଭହୁଁଥିଲା । ମୁଁ ମଧ୍ୟ ଆଶ୍ଚର୍ଯ୍ୟ ଚକିତ ହେଉଥିଲି ।

କିଛି ସମୟର ନୀରବତା ପରେ ସେ ମନରେ ଦମ୍ଭ ରଖି ପଗ୍ଭରିଲା ମୁଁ ଯଦି ଭୁଲ ହୋଇ ନଥାଏ ଆପଣ ପ୍ରଭାସ କୁମାର ନାଥ । ମୁଁ ଧିର ସ୍ୱରରେ ହଁ ଭରିଲି ଆଉ ପଗ୍ଭରିଲି କିନ୍ତୁ ଆପଣ...... ମୋ ପାଟିରୁ କଥା ନସରିବା ପୂର୍ବରୁ ସେ ଦେଖାଇ ଥିଲେ ମୋର ପ୍ରଥମ ଗଳ୍ପ ବହି 'ନୂଆ ନୂଆ' ମୋତେ ଆଉ କିଛି ବୁଝିବାକୁ ବାକି ରହିଲା ନାହିଁ । ମୁଁ ଜାଣି ପାରିଲି ଯେ ସେ ମୋ ଗପର ଜଣେ ପ୍ରସଂଶିକା ଓ ପାଠିକା ।

ତା ପରେ ସିଏ ତାର ପରିଚୟ ଦେଇଥିଲା ମୁଁ ହେଉଛି ବର୍ଷାରାଣୀ ସାହୁ । ବର୍ତ୍ତମାନ +୩ ଶେଷ ବର୍ଷର ଛାତ୍ରୀ । ମୁଁ ଆପଣଙ୍କ ଲେଖାର ଜଣେ ନିୟମିତ ପାଠିକା । ପ୍ରତିଦିନ ଖବରକାଗଜରୁ ଆପଣଙ୍କ ଲେଖା ପଢିଥାଏ । କିନ୍ତୁ ଆଜି ବୋଧେ ମୋ ଜୀବନର ସବୁଠାରୁ ଖୁସିର ଦିନ । ଆଜିର ଖୁସି ମୁଁ କେବେବି ଭୁଲି ପାରିବିନି ।

ଗୋଟାଏ ନୋଟ୍ ବୁକ କିଣିବାକୁ ବହି ଦୋକାନକୁ ଯାଇଥିଲି ସେଠାରେ ଆପଣଙ୍କ ବହି ଦେଖି ବହୁତ ଖୁସି ଲାଗିଲା ଆଉ କିଣି ଆଣିଥିଲି । ପୁଣି ଆପଣଙ୍କ ସହ ମୋର ଦେଖା ହୋଇଗଲା ଏହା ଠାରୁ ଆଉ ବଡ ଖୁସିର ଦିନ ମୋ ପାଇଁ କଣ ହୋଇପାରେ ।

ତା ପରେ ଦୁହେଁ କିଛି ସମୟ କଥା ହୋଇଥିଲୁ ।





ତା ପରେ ସେ ମୋର ଫୋନ୍ ନମ୍ବର ନେଇଥିଲା । ତା'ପରେ ପ୍ରତିଟି ଗପ ଓ କବିତା ପଢ଼ି ସେ ତାର ମତାମତ ରଖୁଥିଲା ଫୋନ୍ ମାଧ୍ୟମରେ ।

ଧିରେ ଧିରେ ଆମର ସଂପର୍କ ଗତି କରିଥିଲା ଏକ ବିପରିତ ଦିଗକୁ । ଆଉ ଦୁହେଁ ପଡ଼ି ଯାଇଥିଲୁ ଦୁହିଁଙ୍କ ପ୍ରେମରେ ।

ଆଉ ସେଦିନର ବର୍ଷା ଆଜି ମୋ ହୃଦୟରେ କରୁଅଛି ପ୍ରେମର ବର୍ଷା ।

ସେଥିପାଇଁ ସେହି ଦିନ, ସେହି ବୁଢ଼ା ବରଗଛ, ସେହି ବର୍ଷା, ଆଉ ଏ ବର୍ଷା ସବୁ କିଛି ମୋ ପାଇଁ ସ୍ମରଣୀୟ ହୋଇ ରହିଛି ।

ସୁନ୍ଦରପୁର, ଉତ୍ତରକୂଳ ହାଟ୍,
ପ୍ରୀତିପୁର, ଯାଜପୁର ।
ମୋ-୦୮୮୯୨୩୦୧୧୪

# ଶ୍ୱାନ ଚେତନା... ! ! !



ବାଲ୍ମୀକି ନାୟକ



*ଶ୍ୱାନ ଚେତନା ବନାମ ମାନବ ଚେତନା*

କିଛି ଦିନତଳେ ଏକ ପତ୍ରିକାରେ ପଢ଼ିଥିଲି । କେରଳର କୋଲ୍ଲାମ ନିକଟସ୍ଥ 'ଆମ୍ମା' ନାମକ ଏକ ସାଧ୍ୱୀ ଅମୃତାନନ୍ଦମୟୀଙ୍କ ଆଶ୍ରମରେ ଥୁମ୍ବିନ ଓ ଭକ୍ତି ନାମକ ଦୁଇଟି ସୁନ୍ଦର ଆଜ୍ଞାକାରୀ କୁକୁର ରହୁଛନ୍ତି । ଏହି ଦୁଇଟି କୁକୁର ଆଶ୍ରମର ଅନ୍ୟ ଅନ୍ତେବାସୀଙ୍କ ସହ ମିଶି ସୂର୍ଯ୍ୟୋଦୟ ସମୟରେ ପାରମ୍ପରିକ ପ୍ରାର୍ଥନାରେ ଭାଗ ନେଇ ଦିନଚର୍ଯ୍ୟା ଆରମ୍ଭ କରନ୍ତି । ସେମାନେ ନିରାମିଷ ଭୋଜନ କରନ୍ତି । ଆମ୍ମାଙ୍କ ପ୍ରବଚନ ସ୍ଥଳରୁ ଶୟନ କକ୍ଷ ପର୍ଯ୍ୟନ୍ତ ସର୍ବଦା ସାଂଗରେ ରହନ୍ତି । ଆମ୍ମା ସବୁବେଳେ ଏହି ଦୁଇ କୁକୁରଙ୍କ ଆଜ୍ଞାକାରୀ ଓ ସମର୍ପଣ ଗୁଣକୁ ମହିମାମଣ୍ଡିତ କରି ଏକ ଆଦର୍ଶ ଗୁଣ ରୂପେ ଭକ୍ତମାନଙ୍କ ଆଗରେ ଉପସ୍ଥାପନ କରନ୍ତି । ଆମ୍ମାଙ୍କ ବିଷୟରେ ଆହୁରି ଅନେକ ଚମତ୍କାରୀ ଘଟଣା ଭକ୍ତମାନଙ୍କ ଭିତରେ ପ୍ରଚଳିତ ଅଛି । ଆମ୍ମା ମାଟିଦୀପରେ ତେଲ ବଦଳରେ ସମୁଦ୍ର ପାଣି ରଖି ସଳିତା ଜଳେଇ ପୂଜା କରୁଥିବା କଥା ବହୁ ପ୍ରଚଳିତ ।

ଏଇଠି ଆମେ କୁକୁର ବା ଶ୍ୱାନର ପ୍ରବୃତ୍ତି, ଚରିତ୍ର ଓ ସ୍ୱଭାବ ବିଷୟରେ ସାଧାରଣ ଜ୍ଞାନ ଦ୍ୱାରା ବିଗ୍ଚାର କରିବା । ବିଜ୍ଞାନର ସିଦ୍ଧାନ୍ତ ତ ଆହୁରି ଅନେକ ତଥ୍ୟ କୁକୁର ବିଷୟରେ ଦେଇଛି । କୁକୁର ଖୁବ୍ ସହଜରେ







ମଣିଷର ଅଧିନତା ସ୍ୱୀକାର କରନ୍ତି । ମଣିଷର ଇଚ୍ଛା ଓ ମନୋଭାବକୁ କିଛି ସୀମା ପର୍ଯ୍ୟନ୍ତ ବୁଝିପାରି, ସେହି ଅନୁସାରେ ନିର୍ଦ୍ଦେଶକୁ ପାଳନ କରିଥାନ୍ତି । ଗୃହପାଳିତ ପ୍ରାୟ ସମସ୍ତ କୁକୁର ଭିତରେ ଏହି ଗୁଣ ଦେଖିବାକୁ ମିଳିଥାଏ । ବିଭିନ୍ନ ଜାତିର କୁକୁର ମାନଙ୍କ ମଧ୍ୟରେ ଏହି ଗୁଣ ଅଳ୍ପ ବା ବେଶୀ ଥାଇପାରେ । କିନ୍ତୁ ଶ୍ୱାନ ଚେତନା କୌଣସି ପ୍ରକାରରେ ମାନବ ଚେତନା ସହ ତୁଳନୀୟ ନୁହେଁ । କାରଣ ଶ୍ୱାନର ଚେତନା ତର୍କ କରେ ନାହିଁ, ବିଶ୍ଳେଷଣ ଆଧାରିତ ନିର୍ଦ୍ଧାରଣ କରିପାରେ ନାହିଁ । ଶ୍ୱାନ ଚେତନା ଇନ୍ଦ୍ରିୟବୋଧରୁ ଅବଧାରଣାତ୍ମକ ଜ୍ଞାନ ପର୍ଯ୍ୟନ୍ତ ପହଞ୍ଚିବା ଭଳି ଜ୍ଞାନ ମିମାଂସୀୟ ଯାତ୍ରା କରିପାରେ ନାହିଁ । ଶ୍ୱାନର ଜ୍ଞାନ କେବଳ ଇନ୍ଦ୍ରିୟବୋଧ ଏବଂ ଅନୁଭବ ସଂଗତ ହୋଇଥାଏ । ଶ୍ୱାନ ଭିତରେ ପ୍ରେମ, ସମର୍ପଣ, ସେବା, ଭୟ, ଅବସାଦ ଭଳି ଯେଉଁ ସବୁ ଗୁଣ ଥାଏ, ତାହା ମୂଳତଃ ପଶୁସୁଲଭ ସହଜ ବୃତ୍ତି (Instinct) ଏବଂ ପ୍ରତିବର୍ତ୍ତି (Reflex) ସହଜ କ୍ରିୟା ମାତ୍ର । ଏହା ବର୍ଷ ବର୍ଷ ଧରି ପୀଢ଼ିରୁ ପୀଢ଼ିକୁ ସଂଗ୍ରହିତ ହୋଇ ବିକଶିତ ହୋଇଥାଏ ।

ଶ୍ୱାନ ଚେତନାର ବିପରୀତ ମାନବ ଚେତନା ତର୍କ ଓ ବିଶ୍ଳେଷଣ କରିଥାଏ । ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ମାନବ ଚେତନାର ବିକାଶ ସ୍ତରକୁ କଳନା କରିହେବନାହିଁ । ବାସ୍ତବ କ୍ଷେତ୍ରରେ ଏକ ଉନ୍ନତ ସ୍ତରର ମଣିଷ ଅନ୍ୟ ଏକ ମଣିଷ ପ୍ରତି ସଂପୂର୍ଣ୍ଣଭାବେ ସମର୍ପିତ ହେବା ସଂଭବ ନୁହେଁ । ମନୁଷ୍ୟକୁ ବଳପୂର୍ବକ ଭୟଭୀତ କରି ଦାସତ୍ୱ ସ୍ୱୀକାର କରାଯାଇ ପାରେ କିନ୍ତୁ ନିଜ ଇଚ୍ଛାରେ ସେ କାହାର ଦାସତ୍ୱ ସ୍ୱୀକାର କରେନାହିଁ । ଯଦି କେଉଁଠି ଏହି ସ୍ଥିତି ଦେଖାଯାଏ, ସେ ନିଶ୍ଚିତ ଭାବେ ମାନସିକ ବିକୃତ କିମ୍ବା ବିଘଟିତ ବ୍ୟକ୍ତିତ୍ୱର ମଣିଷ । ବିଘଟିତ ମଣିଷ ପ୍ରାୟ ସମାଜଦ୍ରୋହୀ ବ୍ୟବହାର କରିଥାଏ । ସେ ଏକ ଅସହାୟ ଓ ଦୟନୀୟ ମଣିଷ ବୋଲି ଅଭିନୟ କରିଥାଏ ।

ସେମାନଙ୍କ ଭିତରୁ ବି ବହୁତ କମ ଲୋକ ଅନ୍ୟର ଅଧିନତା ସ୍ୱୀକାର କରିଥାନ୍ତି । ସ୍ୱଭାବତଃ ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସେ ନିଜ ପରିବାର, ଆତ୍ମୀୟ ସ୍ୱଜନ ଓ ସମାଜର ହିତକୁ ଦୃଷ୍ଟିରେ ରଖି ନିଜର ଆଚରଣକୁ ନିୟନ୍ତ୍ରଣ କରିଥାଏ । ଜଣେ ସୁସ୍ଥ ମସ୍ତିଷ୍କ ଓ ଉନ୍ନତ ସମାଜ ସଚେତକ ବ୍ୟକ୍ତି, ପୂରା ସମାଜ ଏବଂ ଉତ୍ପୀଡ଼ିତ ଜନସମୂହଙ୍କ ହିତ ସାଧନକୁ ଧ୍ୟାନ ରଖି, ନିଜର ଆଚରଣ ନିର୍ଦ୍ଧାରିତ କରିଥାଏ । ଏହାର ବିପରୀତ ଜଣେ ରୁଗ୍‌ଣ ମାନସିକଧାରୀ ତଥା ମନ୍ଦଚେତନ ବ୍ୟକ୍ତି କେବଳ ନିଜର ଓ ନିଜ ପରିବାରର ହିତକୁ ହିଁ ଧ୍ୟାନ ଦେଇଥାଏ । ଦ୍ୱିତୀୟତଃ ସମାଜରେ ସୃଷ୍ଟି ହୋଇଥିବା ବର୍ଗ, ସଂପ୍ରଦାୟ ଓ ଉଚ୍ଚନୀଚ ଜାତି ବ୍ୟବସ୍ଥା ଯୋଗୁଁ କେତେକ ସାଧାରଣ ମଣିଷ ମଧ୍ୟ ନିଜ ବର୍ଗ ବା ସଂପ୍ରଦାୟ ପ୍ରତି ଯେତିକି କର୍ତ୍ତବ୍ୟ କରିଥାନ୍ତି, ତାଙ୍କର ପାଖ ପଡ଼ିଶାରେ ରହୁଥିବା ଅନ୍ୟାନ୍ୟ ବର୍ଗ ବା ସଂପ୍ରଦାର ପ୍ରତି ସେତିକି କରନ୍ତି ନାହିଁ । ଏହି ମିଥ୍ୟା ଚେତନାର ବସ୍ତୁଗତ ଆଧାର ଆମ ସମାଜର ଇତିହାସରେ ଏବଂ ବର୍ତ୍ତମାନ ବି ବିଦ୍ୟମାନ ଅଛି । ଜାତିଗତ ଉତ୍ପୀଡ଼ନ ବର୍ଗୀୟ ଅନ୍ତର୍ବସ୍ତୁକୁ ଠିକ୍ ଭାବେ ନ ବୁଝିବା କାରଣରୁ ଏହି ଭଳି ବୈଷମ୍ୟ ଦେଖାଯାଏ । ଶାସକ ବର୍ଗ ସର୍ବଦା ଏହି

ମିଥ୍ୟା ସମୂହ ଚେତନାର ଫାଇଦା ଉଠାଉଛନ୍ତି । ସେଥିପାଇଁ ସେମାନେ ବିଭିନ୍ନ ଜନ ସମାଗେହରେ ଭାଷଣ ଓ ପ୍ରବଚନ ଦେଇ ମିଥ୍ୟା ଚେତନାକୁ ବୃଦ୍ଧିକରୁଛନ୍ତି ।

ମଣିଷ ସାମାନ୍ୟ ଏବଂ ଅସାମାନ୍ୟ, ଉଭୟ ମାନସିକ ସ୍ଥିତିରେ ବି ସେ ଏକ ସାମାଜିକ ପ୍ରାଣୀ ରୂପେ ଜୀବନ ଅତିବାହିତ କରିଥାଏ । ଏହି ସାମାଜିକତା କୁକୁର କିମ୍ବା ଅନ୍ୟ ପଶୁମାନଙ୍କ ଠାରେ ଦେଖାଯାଏ ନାହିଁ । ସଡ଼କରେ ବୁଲୁଥିବା କୁକୁରମାନେ କେବଳ ଆତ୍ମରକ୍ଷା ଦୃଷ୍ଟିରୁ ଗୋଟିଏ ଦଳରେ ରହନ୍ତି । ଆପଣ ଗୋଟିଏ କୁକୁରକୁ ଠେଙ୍ଗାରେ ପିଟିଲେ ଅନ୍ୟମାନେ ତାକୁ ବଞ୍ଚେଇବାପାଇଁ ପ୍ରତି ଆକ୍ରମଣ କରିଥାନ୍ତି । କିନ୍ତୁ ପାଳିତ କୁକୁରମାନଙ୍କ ଭିତରେ ଆତ୍ମରକ୍ଷା ପ୍ରେରିତ ସମୂହବୃତ୍ତି ନଥାଏ । ସେମାନେ ନିଜର ସୁରକ୍ଷାପାଇଁ ମାଲିକ ଉପରେ ନିର୍ଭର କରନ୍ତି । ପ୍ରତିବଦଳରେ ସେମାନେ ମାଲିକ ପ୍ରତି ପୂର୍ଣ୍ଣତଃ ସମର୍ପିତ ହୋଇଥାନ୍ତି ।

ଗୋଟିଏ କୁକୁର ମଣିଷ ପ୍ରତି ସମର୍ପିତ ହୋଇପାରେ । ଜଣେ ଦୁର୍ବଳ ମାନସିକ ବା ସ୍ୱାର୍ଥପର ମଣିଷ ବି ଅନ୍ୟ ଏକ ସବଳ ବ୍ୟକ୍ତିପ୍ରତି ସମର୍ପିତ ହୋଇପାରେ । ଜଣେ ଉନ୍ନତ ଚେତନଶୀଳ ବ୍ୟକ୍ତି, ଯିଏ ତର୍କ କରିଜାଣେ, ସେ ବି କୌଣସି ଚିନ୍ତାଧାର ପ୍ରତି ସମର୍ପିତ ବା ପ୍ରତିବଦ୍ଧ ହୋଇପାରେ କିନ୍ତୁ ସେ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ପ୍ରତି ସମର୍ପିତ ହୋଇ ପାରିବନି । ସମାନ ବର୍ଗର କିମ୍ବା ନିଜଠାରୁ ଉନ୍ନତ ବର୍ଗର ରଖୁଥିବା ବ୍ୟକ୍ତିଙ୍କ ନେତୃତ୍ୱ ବା ମାର୍ଗଦର୍ଶନ ସ୍ୱୀକାର କରିବା ଏକ ଅଲଗା କଥା କିନ୍ତୁ କୌଣସି ବ୍ୟକ୍ତିପ୍ରତି ଆଖିବନ୍ଦ କରି ସମର୍ପଣ ଭାବ ରଖିବା, ମାନସିକ ଦିବାଳିଆପଣ ବୋଲି କୁହାଯାଇପାରିବ ।

ମାତା ଅମୃତାନନ୍ଦମୟୀ ନିଜର ପାଳିତ କୁକୁର ମାନଙ୍କ ସମର୍ପଣଭାବକୁ ଭକ୍ତଙ୍କ ସମ୍ମୁଖରେ ଏକ ଅନୁକରଣୀୟ ଆଦର୍ଶ ରୂପେ ପ୍ରସ୍ତୁତ କରି ସେ ଏକ ତଥାକଥିତ ଧର୍ମଗୁରୁଙ୍କ କର୍ତ୍ତବ୍ୟ ପାଳନ କରୁଛନ୍ତି । କାରଣ ସମସ୍ତ ଧର୍ମଗୁରୁ କୁହନ୍ତି - 'ତର୍କ କରନାହିଁ । ନିଜ ଗୁରୁଙ୍କ ଉପରେ ଅତୁଟ ବିଶ୍ୱାସ ରଖ । ଆମର କହିବା ଅନୁସାରେ ଆଚରଣ କର । ଗୁରୁଙ୍କ ଆଚରଣକୁ ନେଇ ପ୍ରଶ୍ନ କରନାହିଁ । ତୁମେ ତାହା ବୁଝିପାରିବ ନାହିଁ ।' ଅର୍ଥାତ ତୁମର ତର୍କ ଓ ବିବେକକୁ ଆଶ୍ରମ ବାହାରେ ହିଁ ରଖିଦେଇ ଆସ ।

ଏଇଠି ପ୍ରଶ୍ନ ଉଠୁଛି - ମଣିଷ ସହିତ କୁକୁର କିଣ କେବେ ସମାନ ହୋଇପାରିବ ? କୁକୁର ମାନଙ୍କର ନିର୍ଦ୍ୱନ୍ଦ ସମର୍ପଣ ଭାବକୁ ମଣିଷ ବି ଅନୁକରଣ କରିବା ଉଚିତ ହେବ କି ?

#୩୮/୨, ଦ୍ୱିତୀୟ କ୍ରସ୍
ସତ୍ୟସାଇବାବା ଲେ ଆଉଟ୍
ପୋ : କେ ଆର୍ ପୁରମ୍
ବେଙ୍ଗାଲୁରୁ - ୫୬୦୦୩୬
ମୋବାଇଲ୍ - ୦୯୪୮୨୦୧୬୨୬୦

# ମନରେ ଅଛ କଅଣ ?



ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ




*ମନରେ ଅଛ କଅଣ ? - ସମୀକ୍ଷା*

ପେଷାରେ ଡାକ୍ତର ଶ୍ରୀ ସମ୍ରାଟ କର ନଜର କର୍ମମୟ ଜୀବନରୁ କଛ ସମୟ ସଞ୍ଚୟ କର ଆମ ପର ପାଠକମାନଙ୍କ ପାଇଁ ଲେଖିଛନ୍ତ ଏହ ପୁସ୍ତକ 'ମନରେ ଅଛ କଅଣ ?' । ଜଣେ ପ୍ରତଷ୍ଠିତ ମନୋଚକତ୍ସକ ଭାବରେ ଖ୍ୟାତ ଡାକ୍ତର କରଙ୍କ ଏହ ପୁସ୍ତକ ବାସ୍ତବରେ ମନରେ ଥିବା ଅନେକ ଦ୍ୱନ୍ଦ ଓ ରହସ୍ୟକୁ ଜାଗ୍ରତ କରୁଛ ଏବଂ ବଭିନ୍ନ ସମ୍ବେଦନଶୀଳ ବଷୟ ସମେତ କେତେକ ଅତ୍ୟନ୍ତ କ୍ଷୁଦ୍ର ବଷୟକୁ ମଧ ସେ ଅତ୍ୟନ୍ତ ଚତୁରତାର ସହ କାହାଣୀ ଏବଂ ଗଳ୍ପ ମାଧମରେ ଏହ ପୁସ୍ତକରେ ଉପସ୍ଥାପନ କରଛନ୍ତ ।

ବଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଅନୁଯାୟୀ ବଶ୍ୱରେ ବର୍ତ୍ତମାନ ମାନସିକ ରୋଗରେ ପ୍ରାଦୁର୍ଭାବ ବଢ଼ିବାରେ ଲାଗିଛ, ଅଥଚ ଆମ ଦେଶ ପର ଏକ ଅନୁନ୍ନତ ସମାଜରେ ମାନସିକ ରୋଗକୁ ବଭିନ୍ନ ଧରଣର ଅନ୍ଧବଶ୍ୱାସ ସହ ଯୋଡ଼ିଦେଇ ଆମେ ଅବହେଳା କରଚାଲୁଛେ । ଏହ ସବୁ ବଷୟକୁ ସହଜ ଓ ସରଳ ତଥା ବୋଧଗମ୍ୟ ଭାଷାରେ ଲେଖି ଏହ ପୁସ୍ତକକୁ ସେ ପ୍ରକାଶ କରଥିବା ହେତୁ ଆମେ ଆଶା କରୁଛୁ ଏହା ଅନେକ ଲୋକଙ୍କୁ ବଭିନ୍ନ ମାନସିକ ସମସ୍ୟାରୁ ମୁକ୍ତି ପ୍ରଦାନ କରବାରେ ସହାୟକ ହେବ । ୯୨







ପୃଷ୍ଠା ସମ୍ବଳିତ ଏହି ପୁସ୍ତକରେ ୨୫ ଗୋଟି ସମ୍ବେଦନଶୀଳ ବିଷୟରେ ଲେଖାଯାଇଛି । ଏହି ପୁସ୍ତକକୁ ସେ ନିଜ ଜେଜେବାପା ଓ ମାଆଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ କରିଛନ୍ତି । ପୁସ୍ତକର ଉପକ୍ରମଣିକାରେ ଡାକ୍ତର କରଙ୍କ ପିତା ବିଶିଷ୍ଟ ମନୋଚିକିତ୍ସକ ଡା ଗୋପାଳଚନ୍ଦ୍ର କର, ଏବଂ ମାଆ ଡ଼ ଗାୟତ୍ରୀଦେବୀଙ୍କ ବାର୍ତ୍ତା ଉପସ୍ଥାପିତ କରାଯାଇଛି ।

ବାସ୍ତବିକ ଜୀବନରେ ଆମେ ଅନେକ ପ୍ରକାର ରୋଗର ଶୀକାର ହେଉ ଅଥଚ ଆମେ ଜାଣିଶୁଣି ହେଉ ଅବା ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ସେ ସବୁ ପ୍ରତି ଅବହେଳା କରିଦେଉ । ଜ୍ୱର ଝାଡ଼ାବାନ୍ତି ଆଦି ରୋଗ ହେଲେ  ସମସ୍ତେ ଡାକ୍ତରୀ ପରାମର୍ଶ ନିଅନ୍ତି, କିନ୍ତୁ ଯଦି ଘରେ ଜଣେ କେହି ବ୍ୟକ୍ତି ଅତ୍ୟଧିକ ଅବସାଦରେ ରହେ, କିମ୍ବା ପାଗଳଙ୍କ ପରି ବ୍ୟବହାର କରେ ଆମେ ମନେ ମନେ ଚିନ୍ତାକରୁ ଯେ ଆମ ଘରେ କାହାକୁ ମାନସିକ ରୋଗ ହେବନାହିଁ, ଏଣୁ ଏହାକୁ ଅଣଦେଖା କରିଦେଉ । ଏହା ବାସ୍ତବିକ ଚିନ୍ତାର ବିଷୟ । ଛୋଟ ଛୋଟ ଘଟଣାରେ ଥାଏ ଅନେକ ଦୁରାରୋଗ୍ୟ ମାନସିକ ରୋଗର ଲକ୍ଷଣ, ହେଲେ ସେ ସବୁ ପ୍ରତି ଆମେ ଧ୍ୟାନ ଦେଉନାହୁଁ । ଯେମିତି ଘରେ କେହି ଜଣେ ବାରମ୍ବାର ଭୁତ ଦେଖିବା କଥା କହିବା, କିମ୍ବା ଅଦୃଶ୍ୟ ଶକ୍ତି ଦେଖାଦେଉଛି ବୋଲି କହିବା, ଶୂନ୍ୟବାଣୀ ହେଉଛି ବୋଲି କହିବା, ଏ ସବୁ ବିଷୟକୁ ଆମେ ରୋଗ ବୋଲି ନ ଭାବି ଭୁତ ଧରିଛି ବା ଶୂନ୍ୟବାଣୀ ହେଉଛି କହି ଆଡ଼େଇ ଦେଉ । କିନ୍ତୁ ଏହା ଯେ ମାନସିକ ରୋଗର ଲକ୍ଷଣ ତାହା ଆମେ ବୁଝୁନାହୁଁ ।

ଡାକ୍ତର କର ଏହି ପୁସ୍ତିକାରେ ଏହିପରି ଅନେକ ବିଷୟରେ ଚର୍ଚ୍ଚା କରିଛନ୍ତି ଯଥା; ମନରେ ରହିଛି ମହିଷାସୁର, ପ୍ରେମ କରାଯାଏ ନା ହୋଇଯାଏ, ନିଶାସେବନ କରିବାକୁ ଏତେ ଇଚ୍ଛା କାହିଁକି?, ଭିଡ଼କୁ ଯିବାକୁ ଭୟ କରୁଛନ୍ତି କି ?, ଧର୍ମ ଓ ଭଣ୍ଡବାବା, ମୁଁ ଆହୁରି ବୁଦ୍ଧିଆ ହୋଇପାରିବି କି?, ଶୂନ୍ୟବାଣୀ ହେଉଛି କି?, ସତରେ କଣ ଭୁତ ଲାଗେ ? ମୁଣ୍ଡ ବିନ୍ଧୁଛି କି?, ପରୀକ୍ଷାପାଇଁ ପ୍ରସ୍ତୁତ ହେବେ କିପରି ଏମିତି ଅନେକ ବିଷୟ ସମ୍ବଳିତ ଅନେକ ଲେଖା ଏହି ପୁସ୍ତକରେ ପ୍ରକାଶିତ ହୋଇଛି ଯାହା ବାସ୍ତବିକ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଆବଶ୍ୟକ । ଏହି ସବୁ ସାଧାରଣ ବିଷୟ ସହିତ ଅନେକ ଅତି ସମ୍ବେଦନଶୀଳ ଓ ସାଧାରଣରେ ଚର୍ଚ୍ଚା ନ ହୋଇପାରୁଥିବା ବିଷୟ ଯଥା, ଲିଙ୍ଗ ପରିବର୍ତ୍ତନ କାହିଁକି ?, ହସ୍ତମୈଥୁନ କାହିଁକି? ସମଲିଙ୍ଗୀ ବ୍ୟବହାର କଣ ? ଆତ୍ମହତ୍ୟା, ଆଦି ଅନେକ କଥା ମଧ୍ୟ ଅତି ସରଳ ଓ ବୁଝିହେଉଥିବା ଭାଷାରେ ଲେଖାଯାଇଛି । ଛୋଟଛୋଟ କାହାଣୀର ଅବତାରଣା କରାଯାଇ ମୁଖ୍ୟ ବିଷୟ ବସ୍ତୁ ବିଷୟରେ ପାଠକଙ୍କୁ ଅବଗତ କରାଇଦେବା ପରେ ଏହାର ବୈଜ୍ଞାନିକ ଦୃଷ୍ଟିକୋଣ ଓ ଚିକିତ୍ସା ଦୃଷ୍ଟିରୁ ଏହାର ଗୁରୁତ୍ୱ ଆଦି ବିଷୟରେ ଲେଖାଯାଇଛି, ଯାହା ଡାକ୍ତର କରଙ୍କ ଅଧିବସାୟ ଏବଂ ଗବେଷଣାଧର୍ମୀ ଦୃଷ୍ଟିକୋଣକୁ ଜାଗ୍ରତ କରୁଛି । ବାସ୍ତବିକ ନିଜ କର୍ମବହୁଳ




ଜୀବନରେ ସମୟ ବାହାର କରି ଏହିପରି ଏକ ଉପାଦେୟ ପୁସ୍ତକ ରଚନା କରୁଥିବା ହେତୁ ଆମେ ଡାକ୍ତର ଶ୍ରୀ କରଙ୍କୁ ଧନ୍ୟବାଦ ଜଣାଉଛୁ ।



ଶ୍ରୀ ସମ୍ରାଟ କର ସମ୍ପ୍ରତି ଓଡ଼ିଶାର ଜଣେ ମାନ୍ୟତାପ୍ରାପ୍ତ ଏବଂ ପ୍ରତିଷ୍ଠିତ ମନୋଚିକିତ୍ସକ ଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି । ସମାଜ ସେବା ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ସଂପୃକ୍ତିପାଇଁ ସେ ଅନେକ ପ୍ରତିଷ୍ଠିତ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ଏବଂ ମନୋଚିକିତ୍ସା ବିଷୟ ସମ୍ବଳିତ ଅନେକ ଆଲେଖ୍ୟ ଦେଶ ଓ ବିଦେଶରେ ବିଭିନ୍ନ ଉଚ୍ଚକୋଟୀର ପତ୍ରପତ୍ରିକା ଏବଂ ବିଜ୍ଞାନ ପତ୍ରିକାମାନଙ୍କରେ ସ୍ଥାନ ପାଇଛି । ଉଭୟ ରେଡ଼ିଓ ଏବଂ ଟେଲିଭିଜନରେ ମଧ୍ୟ ସେ ଅନେକ ସମୟରେ ଆମନ୍ତ୍ରିତ ବିଷୟ ବିଶେଷଜ୍ଞ ଭାବରେ ଯୋଗଦେଇ ଲୋକମାନଙ୍କୁ ମାନସିକ ସ୍ୱାସ୍ଥ୍ୟ ବିଷୟରେ ସଚେତନ କରି ଆସୁଛନ୍ତି । ବିଭିନ୍ନ ସମୟରେ ସେ ଭିନ୍ନ ଭିନ୍ନ ଖବର କାଗଜରେ ମାନସିକ ସ୍ୱାସ୍ଥ୍ୟ ସମ୍ବଳିତ ଲେଖାମାନ ପ୍ରକାଶ କରି ଆସୁଛନ୍ତି । ଆହ୍ୱାନ ଓଡ଼ିଆ ପରିବାର ଡାକ୍ତର ଶ୍ରୀ କରଙ୍କ ଦୀର୍ଘ ଓ ନିରୋଗ ଜୀବନର କାମନା କରୁଛି ।

[ ପୁସ୍ତକଟିକୁ ପ୍ରକାଶିତ କରିଛନ୍ତି କଟକର ପ୍ରମୁଖ ଇଉନାଇଟେଡ୍ ବୁକ୍ ହାଉସ୍ । ଏବଂ ପୁସ୍ତକ ବିତରଣ କରୁଛନ୍ତି ବନିତା ପବ୍ଲିକେସନ, ଭୁବନେଶ୍ୱର । ପୁସ୍ତକର ପ୍ରଚ୍ଛଦ ସଜାଇଛନ୍ତି ଶ୍ରୀ ଚୁଡ଼ାମଣୀ ଦାସ । ଅକ୍ଟୋବର ୨୦୧୫ରେ ପ୍ରକାଶିତ ଏହା ପୁସ୍ତକର ପ୍ରଥମ ସଂସ୍କରଣ । ଏହାର ମୂଲ୍ୟ ମାତ୍ର ଚାଳିଶି ଟଙ୍କା ଧାର୍ଯ୍ୟ କରାଯାଇଛି, ଯାହା ଏହିପରି ଏକ ଉପାଦେୟ ପୁସ୍ତକ ପାଇଁ ବହୁତ କମ । ପୁସ୍ତକ ବର୍ତ୍ତମାନ ଓଡ଼ିଶାର ବିଭିନ୍ନ ସହର ଓ ଗ୍ରାମାଞ୍ଚଳରେ ଉପଲବ୍ଧ ଅଛି । ଇଚ୍ଛୁକ ପାଠକପାଠିକା, ପୁସ୍ତକ ପାଇବାପାଇଁ ବନିତା ପବ୍ଲିକେସନ, ମାର୍ଫତ - ବୁକ୍ ଷ୍ଟଲ୍, ରେଲୱେ ଷ୍ଟେସନ, ଭୁବନେଶ୍ୱର-୭୫୧୦୦୧, ଓଡ଼ିଶା, ଫୋନ୍ : ୯୪୩୯୩୭୪୭୭୪ ସହ ସମ୍ପର୍କ କରିପାରିବେ । ]

ଆହ୍ୱାନର ଆଗାମୀ ସଂସ୍କରଣ ଡିସେମ୍ବର ମାସରେ ପ୍ରକାଶିତ ହେବ । ନଜ ଦ୍ୱାର୍ ଲଖିତ କବତା ଓ କାହାଣୀ ଶୀଘ୍ର ଆମ ନକଟକୁ ପଠାନ୍ତୁ ।

ଆପଣଙ୍କ ଲଖିତ କବତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତହାସ, ରେଷେଇ, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦ ଆପଣ ଇ-ମେଲ୍ ଦ୍ୱାର୍ ଆମ ନକଟକୁ ପଠାଇ ପାରବେ ।

ଆମ ଇ-ମେଲ୍ ଠିକଣା :

# aahwaan@gmail.com

ଚଠି ମାଧ୍ୟମରେ ଲେଖା ପ୍ରେରଣ କରବା ଠିକଣା

## ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବୀମାନଗର, ୨ୟ ଗଳ, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଫୋନ : ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦



ଏହ ଇ-ପତ୍ରିକା ଆହ୍ୱାନ ଓଡ଼ିଆ ପରବାର ଦ୍ୱାର୍ ସମ୍ପୂର୍ଣ୍ଣ ନିଃଶୁଳ୍କ ବତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତପ୍ରସାଦ ପଟ୍ଟନାୟକଙ୍କ ଦ୍ୱାର୍ ପ୍ରକାଶିତ

ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।

ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ । ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ । ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।

ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।

ଲେଖକ ଲେଖିକାମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇପାରିବେ । ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବା ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରିବେଶ ପ୍ରଦୁଷଣ ବିରୋଧ କରୁ ।

ଆହ୍ୱାନ ଇ-ପତ୍ରିକାରେ ଲେଖା ପ୍ରକାଶିତ କରିବାପାଇଁ ଯଦି ଆପଣ ଇଚ୍ଛୁକ ତେବେ ନିଜ ଲିଖିତ କୃତିକୁ ଆପଣ ଆମ ନିକଟକୁ ପଠାନ୍ତୁ । ଯେହେତୁ ଏହି ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭାପାଏ ତେଣୁ ଏହି ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ଲେଖା ପଠାଇ ପାରିବେ ନାହିଁ, ତେବେ ଆପଣ ନିଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନିର୍ମଳ ହସ୍ତାକ୍ଷରରେ ଲେଖି ଆମ ନିକଟକୁ ନିମ୍ନ ଠିକଣାରେ ପଠାଇ ପାରିବେ ।


ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ବୀମା ନଗର - ୨ୟ ଗଳି

ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦

ଓଡ଼ିଶା, ଫୋନ୍: ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦


ଯଦି ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା

ପଠାଇବାକୁ ଚାହାନ୍ତି ତେବେ ନିଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନିକୋଡ଼ ଫଣ୍ଟରେ ଟାଇପ୍ କରିବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍ସ୍‌ଲିଟେରେସନ୍) କରି Microsoft Word Document ରେ ଆମ ନିକଟକୁ ପଠାନ୍ତୁ, କିମ୍ବା ଲେଖାକୁ ସ୍କାନ୍ କରି ଜେପିଇଜି ଫର୍ମାଟରେ ଇମେଲ୍ Attachment କରି ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା-ସମ୍ପାଦକ, 'ଆହ୍ୱାନ'

**ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ଉପଲକ୍ଷେ ସମସ୍ତ ପାଠକ ପାଠିକାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ**

**https://www.facebook.com/odiaparibar**

**ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ**

ଯଦି ଏହି ସଂସ୍କରଣରେ କୌଣସି ତ୍ରୁଟିଥାଏ ତାହେଲେ ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।